# ବିଶ୍ୱ-ସାହିତ୍ୟ

— ଦ୍ୱିତୀୟ ଖଣ୍ଡ —

## ଗଲିଭରର
## ଭ୍ରମଣ କାହାଣୀ

(ଲେଖକ—ଜୋନାଥନ୍ ସୁଇଫ୍ଟ୍)

ଅନୁଲେଖକ

ଅଧ୍ୟାପକ ଶ୍ରୀଧର ଦାସ, ଏମ୍. ଏ., ଡି.ଇଡ଼.

ପ୍ରଥମ ସଂସ୍କରଣ

୧୯୫୭

ପ୍ରକାଶକ

ଶ୍ରୀ ଅଭିରାମ ମହାପାତ୍ର, ବି. ଏ.

ଗ୍ରନ୍ଥମନ୍ଦିର

ବିନୋଦବିହାରୀ, କଟକ-୨

ମୂଲ୍ୟ ବାରଅଣା [ ୭୫ ନୂଆ ପଇସା ]

# ସୂଚନା

ପୃଥିବୀର ବିଭିନ୍ନ ଭାଷାର ସାହିତ୍ୟରେ କେତେକ ପୁସ୍ତକ, ଭାବ ସମ୍ପଦରେ ସ୍ଥାୟୀ ଆସନ ଲାଭ କରିଛନ୍ତି । ସେ ଗୁଡ଼ିକ ଦେଶ-କାଳ ନିର୍ବିଶେଷରେ ପାଠକମାନଙ୍କର ଆଦରଣୀୟ ହୋଇ 'ବିଶ୍ୱ-ସାହିତ୍ୟ' ଆଖ୍ୟା ଲାଭ କରିଥାନ୍ତି । କିନ୍ତୁ ଏକ ଭାଷାରେ ଲିଖିତ ସାହିତ୍ୟ ସେହି ଭାଷା ଅନଭିଜ୍ଞ ବ୍ୟକ୍ତି ପକ୍ଷରେ ପଢ଼ି ପାରିବା ଅସମ୍ଭବ । ତେଣୁ ବିଶ୍ୱ-ସାହିତ୍ୟ ରୂପେ ପରିଗଣିତ ଗ୍ରନ୍ଥମାନ ଭାଷାନ୍ତରିତ କରିବା ଆବଶ୍ୟକ ହୋଇଥାଏ । ଏହି ପ୍ରକାର କେତେକ ଗ୍ରନ୍ଥର ସଂକ୍ଷିପ୍ତ ଓଡ଼ିଆ ସଂସ୍କରଣ ପ୍ରକାଶ କରିବା 'ବିଶ୍ୱ-ସାହିତ୍ୟ ଗ୍ରନ୍ଥମାଳାର' ଲକ୍ଷ୍ୟ । ଏଥିରେ ମୂଳଗ୍ରନ୍ଥମାନଙ୍କର ମାଧୁରୀ ଆଶାକରିବା ବିଡ଼ମ୍ବନା ମାତ୍ର । ପାଠକ ଏଥିରୁ ମୂଳ ଗ୍ରନ୍ଥମାନଙ୍କ ସମ୍ବନ୍ଧରେ ସ୍ଥୂଳଧାରଣା କରି ପାରିଲେ ଆମର ଉଦ୍ଦେଶ୍ୟ ସଫଳ ହେଲା ବୋଲି ମନେ କରିବୁ ।

—ପ୍ରକାଶକ—

# ଗଲିଭରର ଭ୍ରମଣ

## ଲିଲିପୁଟ

— ୧ —

ମୋର ନାମ ଗଲିଭର । ଇଂଲଣ୍ଡର ନଟିଂହାମଶାୟାରରେ ମୋର ଜନ୍ମ । ମୋ ପିତାଙ୍କର ସାମାନ୍ୟ ଜମିଦାରି ଥିଲା । ଆମେ ପାଞ୍ଚ ଭାଇ । ସେମାନଙ୍କ ମଧ୍ୟରେ ମୁଁ ହେଉଛି ମଧ୍ୟମ ପୁତ୍ର । ମୋର ଚଉଦବର୍ଷ ବୟସବେଳେ ପିତା ମୋତେ କାମ୍ବ୍ରିଜକୁ ପଢ଼ିବାପାଇଁ ପଠାଇଲେ ।

ମୁଁ ପ୍ରାୟ ତିନି ବର୍ଷ ଅଧ୍ୟୟନ କଲାପରେ ବାପା ଆଉ ମୋର ବ୍ୟୟଭାର ବହନ କରିପାରିଲେ ନାହିଁ । ତେଣୁ ମୁଁ ଲଣ୍ଡନର ଜଣେ ବଡ଼ ଡାକ୍ତରଙ୍କ ପାଖେ ରହି ଡାକ୍ତରି ଶିଖିଲି । ଉକ୍ତ ଡାକ୍ତରଙ୍କ ନାମ ଜେମସ୍ ବେଟସ୍ । ଦେଶବିଦେଶରେ ଭ୍ରମଣ କରିବାପାଇଁ ମୋର ବିଶେଷ ଇଚ୍ଛା ଥିଲା । ତେଣୁ ବାପା ମୋତେ ଦେଉଥିବା ସାମାନ୍ୟ ଟଙ୍କାରୁ କିଛି କିଛି ସଞ୍ଚୟ କରି ମୁଁ ନୌ-ବିଦ୍ୟା ଶିଖିବାକୁ ଲାଗିଲି ।

ବେଟସ୍‌ଙ୍କଠାରୁ ବିଦାୟ ନେଇ ମୁଁ ପିତାଙ୍କ ନିକଟକୁ ଫେରି ଆସିଲି । ପିତା, ପିତୃବ୍ୟ ଓ କେତେକ ବନ୍ଧୁବାନ୍ଧବଙ୍କ ସାହାଯ୍ୟରେ ମୁଁ ଲିଡେନ୍ ସହରକୁ ଗଲି । ସେମାନେ ମୋର ବ୍ୟୟନିମନ୍ତେ ଚାଳିଶ ପାଉଣ୍ଡ ଦେଇଥିଲେ ଓ ମୋର ଚଳିବାପାଇଁ ବର୍ଷକୁ ତିରିଶ ପାଉଣ୍ଡ ପଠାଇବେ ବୋଲି ଆଶା ଦେଇଥିଲେ । ମୁଁ ତାସଠାରେ ଦୁଇ ବର୍ଷ ସାତ ମାସ ରହି ଡାକ୍ତରି ପଢ଼ିଲି । ସମୁଦ୍ରଯାତ୍ରାରେ ମୋତେ-ଏହି ବିଦ୍ୟା ସାହାଯ୍ୟ କରିବ ବୋଲି ମୋର ବିଶ୍ୱାସ ଥିଲା ।

ଲିଡେନରୁ ଫେରିବା ପରେ ବେଟସ୍‌ଙ୍କ ଅନୁଗ୍ରହରୁ ମୁଁ 'ସ୍ୱାଲୋ' ଜାହାଜରେ ଡାକ୍ତରି କାମଟିଏ ପାଇଲି । ସେହି ଜାହାଜର କପ୍ତାନ ଅବ୍ରାହାମ ପାନେଲଙ୍କ ସଙ୍ଗେ ମୁଁ ନାନା ସ୍ଥାନକୁ ସମୁଦ୍ର ଯାତ୍ରା କରି ସାଢ଼େ ତିନି ବର୍ଷ ଅତିବାହିତ କଲି ।

ସମୁଦ୍ରଯାତ୍ରାରୁ ଫେରିଆସି ମୁଁ ଲଣ୍ଡନରେ ରହି ଡାକ୍ତରି ବ୍ୟବସାୟ କରିବାକୁ ସ୍ଥିର କଲି । ବେଟସ୍‌ଙ୍କ ଦୟାରୁ ମୁଁ ଅନେକ ରୋଗୀ ପାଉଥିଲି । ମାତ୍ର ଦୁଇ ବର୍ଷପରେ ତାଙ୍କର ମୃତ୍ୟୁ ହେଲା । ମୋର ଡାକ୍ତରି ବ୍ୟବସାୟ ଆଉ ଭଲ ଚାଲିପାରିଲା ନାହିଁ ।

ସେତେବେଳକୁ ମୁଁ ବିବାହ କରି ସାରିଥାଏଁ । ଡାକ୍ତରିରୁ କିଛି ଆୟ ହେଉ ନ ଥାଏ । ସ୍ତ୍ରୀ ଓ ବନ୍ଧୁମାନଙ୍କ ପରାମର୍ଶରେ ମୁଁ ପୁଣି ସମୁଦ୍ରଯାତ୍ରାରେ ଯିବାକୁ ସ୍ଥିର କଲି । ସୌଭାଗ୍ୟବଶତଃ ମୁଁ ଗୋଟିକ ପରେ ଆଉ ଗୋଟିଏ ଜାହାଜରେ ଡାକ୍ତରି କାମ ପାଇଲି । ଛଅ ବର୍ଷମଧ୍ୟରେ ମୁଁ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଭାରତୀୟ ଦ୍ୱୀପପୁଞ୍ଜକୁ ଅନେକ ବାର ଯାଇଥିଲି । ସେଥିରେ ମୋର ଏକପ୍ରକାର ଭଲ ଅର୍ଥ ଉପାର୍ଜିତ ହୋଇଥିଲା ।

ଏହି ସମୟରେ ଅଣ୍ଟିଲୋପ ନାମକ ଗୋଟିଏ ଜାହାଜ ଦକ୍ଷିଣ ସମୁଦ୍ରକୁ ଯାଉଥିଲା । ଏହାର କପ୍ତାନ ମୋତେ ଡାକ୍ତରରୂପେ-

ନିଯୁକ୍ତ ହେଲେ । ୧୬୯୯ ମସିହା ମଇ ମାସ ୪ ତାରିଖରେ ଆମ ଜାହାଜ ବ୍ରିଷ୍ଟଲ ବନ୍ଦରରୁ ବାହାରିଲା । ପ୍ରଥମେ କେତେକ ଦିନ ଆମେ ବେଶ୍ ସୁଖରେ ଗଲୁଁ । ତାପରେ ଭୀଷଣ ଝଡ଼ ହେଲା । ଆମ ଜାହାଜଟି ଭନ୍ ଡିମେଣ୍ଡସଲାଣ୍ଡର ଉତ୍ତରପଶ୍ଚିମ ଅଞ୍ଚଳକୁ ବାୟୁବେଗରେ ଉଡ଼ି ହୋଇଗଲା । ଜାହାଜର ଚାଳକମାନଙ୍କ ଅତ୍ୟଧିକ ପରିଶ୍ରମ ପଡ଼ିଲା । ଭଲ ଖାଦ୍ୟ ମଧ୍ୟ ମିଳୁ ନ ଥିଲା । ଫଳରେ ସେମାନଙ୍କ ମଧ୍ୟରୁ ବାର ଜଣ ପ୍ରାଣ ହରାଇଲେ । ଅନ୍ୟମାନେ ଦୁର୍ବଳ ହୋଇପଡ଼ିଲେ ।

ନଭେମ୍ବର ମାସ ୫ ତାରିଖ ଦିନ ସମୁଦ୍ର କୁହୁଡ଼ିରେ ଅଚ୍ଛାଦିତ ହୋଇଗଲା । ନାବିକମାନେ ଜାହାଜଠାରୁ ଅଳ୍ପ ଦୂରରେ ଗୋଟିଏ ପାହାଡ଼ ଦେଖିପାରିଲେ । ପବନ ଏତେ ବେଗରେ ବହୁଥିଲା ଯେ, ସେମାନେ ଜାହାଜର ଦିଗ ଫେରାଇ-ପାରିଲେ ନାହିଁ । ଫଳରେ ଜାହାଜଟି ପାହାଡ଼ରେ ଧକ୍କା ଖାଇ ଦୁଇଖଣ୍ଡ ହୋଇଗଲା । ଜାହାଜରେ ଗୋଟିଏ ମାତ୍ର ଡଙ୍ଗା ଥିଲା । ମୁଁ ଓ ଅନ୍ୟ ପାଞ୍ଚ ଜଣ ନାବିକ ସେ ଡଙ୍ଗାରେ ବସି ଜାହାଜଠାରୁ ଦୂରକୁ ଚାଲିଗଲୁଁ । ପାହାଡ଼ ମଧ୍ୟ ଦୂରରେ ରହିଗଲା । କିନ୍ତୁ ପ୍ରାୟ ଅଧଘଣ୍ଟା ପରେ ଉତ୍ତର ପବନ ଭୀଷଣଭାବରେ ବହିଲା । ଆମର ଡଙ୍ଗାଟା ଓଲଟିପଡ଼ିଲା ।

ଡଙ୍ଗାରେ ଥିବା ମୋର ସାଥୀମାନଙ୍କର କିମ୍ବା ଭଙ୍ଗା ଜାହାଜରେ ଥିବା ଅନ୍ୟମାନଙ୍କର ଅବସ୍ଥା କଅଣ ହେଲା ମୁଁ ଜାଣେ ନାହିଁ; ତେବେ ମୋର ଦୃଢ଼ ବିଶ୍ୱାସ ସେମାନେ ସମୁଦ୍ରରେ ପ୍ରାଣ ହରାଇଥିଲେ । ଯାହା ହେଉ, ମୁଁ ସମୁଦ୍ରରେ ପହଁରିବାକୁ ଲାଗିଲି । ଅତଳ ସମୁଦ୍ରରେ କେତେ ସମୟ ଅବା ପହଁରିପାରନ୍ତି ? ମୋର ବଳ କମି ଆସିଲା । ହାତ ଗୋଡ଼ ଚଳାଇବାର ଶକ୍ତି ଅଉ ରହିଲା ନାହିଁ । ଜୀବନର ଆଶା କ୍ଷୀଣରୁ କ୍ଷୀଣତର ହେଲା ।

ସେତେବେଳକୁ ଝଡ଼ ପବନ ଅଉ ନ ଥାଏ । ମୁଁ ପହଁରିବାର ଚେଷ୍ଟା ଛାଡ଼ିଦେଲି । ଦେଖେଁ ତ ସେଠାରେ ମୋର ପାଦ ଭୂମି ସ୍ପର୍ଶ କରି ପାରୁଛି । ମୁଁ ପାଣିରେ ଚାଲି ଚାଲି କୂଳରେ ପହଞ୍ଚିଲି ।

ମୋ ଦେହରେ ଅବୌ ବଳ ନ ଥାଏ । ବହୁ କଷ୍ଟରେ ଅଧମାଇଲ ପର୍ଯ୍ୟନ୍ତ ଚାଲିଲି । କିନ୍ତୁ ଘର ବା ମନୁଷ୍ୟର କୌଣସି ଚିହ୍ନ ସୁଦ୍ଧା ଦେଖିଲି ନାହିଁ । ନିତାନ୍ତ କ୍ଳାନ୍ତ ହୋଇଥିବାରୁ ମୁଁ ଶୋଇପଡ଼ିବାକୁ ସ୍ଥିର କଲି । ସେଠାରେ ଘାସଗୁଡ଼ିକ ଅତି ଛୋଟ ଓ କୋମଳ, ମୁଁ ତାରି ଉପରେ ପଡ଼ିଗଲି । ଅଳ୍ପ ସମୟଭିତରେ ନିଦ ହୋଇଗଲା । ଏପରି ଗାଢ଼ନିଦ୍ରା ସୁଖ ବୋଧ ହୁଏ ମୁଁ ଜୀବନରେ କେବେ ଅନୁଭବ କରି ନ ଥିଲି । ମୋ ନିଦ-ଭାଙ୍ଗିଲା-ବେଳକୁ ସୂର୍ଯ୍ୟଙ୍କର କିରଣ ଉତ୍ତମରୂପେ ଅନୁଭୂତ ହେଉଥାଏ ।

— ୨ —

ମୁଁ ଉଠିବାକୁ ଚେଷ୍ଟା କଲି; କିନ୍ତୁ ଟିକିଏ ସୁଦ୍ଧା ଘୁଞ୍ଚିପାରିଲି ନାହିଁ । ମୁଁ ଚିତ୍ ହୋଇ ଶୋଇଥିଲି । ଦେଖେଁ ତ ମୋର ହାତ ଗୋଡ଼ସବୁ ସରୁ ସରୁ ସୂତାରେ ଚାରିପାଖେ ଖୁଣ୍ଟି ସହିତ ବନ୍ଧା ହୋଇଛି । ମୋର ମୁଣ୍ଡବାଳ ସୁଦ୍ଧା ସେହିପରି ବନ୍ଧା ହୋଇଛି । ମୁଁ ବୁଝିପାରିଲି ଯେ ମୋର ଛାତିଠାରୁ ଜଙ୍ଘ ପର୍ଯ୍ୟନ୍ତ ସମସ୍ତ ଅଂଶ ସେହିପରି ସରୁ ସୂତାରେ ଖୁଣ୍ଟି ସହିତ ବନ୍ଧା । ଏଣେ ରୌଦ୍ର ତାପଯୋଗୁଁ ମୋ ଆଖିକୁ କଷ୍ଟ ହେଉଥାଏ । ମୁଁ କେବଳ ଆକାଶକୁ ଚାହିଁ ପାରୁଥାଏଁ । ମୋଠାରୁ କିଛି ଦୂରରେ ଗୋଟାଏ ଗୋଳମାଳ ଶୁଣିବାକୁ ପାଇଲି; କିନ୍ତୁ ସେଥିର କୌଣସି ଅର୍ଥ ବୁଝିପାରିଲି ନାହିଁ ।

ଗୋଟାଏ କି ଜୀବ ମୋ ବାଁ ଗୋଡ଼ଉପରେ ଚାଲିବାର ଅନୁଭବ କଲି । ସେ ଜୀବଟି ଅସ୍ତେ ମୋ ଛାତିଉପରେ ଚାଲି

ବେକ ପାଖରେ ପହଞ୍ଚିଲା । ମୁଁ ବଡ଼ କଷ୍ଟରେ ମୁଣ୍ଡ ନୁଆଇଁ ଦେଖିଲି ଯେ, ଜୀବଟି ଦେଖିବାକୁ ଅବିକଳ ମଣିଷ ପରି; କିନ୍ତୁ ତାର ଉଚ୍ଚତା ଛଅ ଇଞ୍ଚରୁ ବେଶୀ ହେବ ନାହିଁ । ସେ ହାତରେ ଧନୁଶର ଧରିଥିଲା



ଓ ତା ପିଠିରେ ଶରମୂଣା ଝୁଲୁଥିଲା । ଏଥିମଧ୍ୟରେ ତାର ପରି ପ୍ରାୟ ଚାଳିଶ ବା ପଚାଶଟି ଜୀବ ମୋ ଉପରେ ଚାଲୁଥିବାର ମୁଁ ଅନୁଭବ କଲି । ମୋତେ ଏତେ ଆଶ୍ଚର୍ଯ୍ୟ ଲାଗିଲା ଯେ ମୁଁ ଚିତ୍କାର କରି ଉଠିଲି । ଜୀବଗୁଡ଼ାକ ଭୟରେ ପଳାଇବାକୁ ଲାଗିଲେ । କେହି କେହି ମୋ ଛାତିଉପରୁ ତଳକୁ ଡେଇଁପଡ଼ିଲେ । ପରେ ମୁଁ ଶୁଣିଥିଲି ଯେ ସେମାନଙ୍କ ମଧ୍ୟରୁ ଅଧିକାଂଶ କ୍ଷତବିକ୍ଷତ ହୋଇ ଯାଇଥିଲେ ।

କିଛି ସମୟପରେ ସେମାନେ ପୁଣି ମୋ ଉପରକୁ ଚଢ଼ି ଆସିଲେ । ଜଣେ ମୋ ଓଠ ପାଖରେ ଛିଡ଼ା ହୋଇ ଉଚ୍ଚ ସ୍ୱରରେ କିଅଣ କହିଲା, ଅନ୍ୟମାନେ ଠିକ୍ ସେହି କଥା କହିଲେ । ମୁଁ ତାର କୌଣସି ଅର୍ଥ ବୁଝିପାରିଲି ନାହିଁ ।

ମୋତେ ବଡ଼ ଖରାପ ଲାଗୁଥାଏ । ଶେଷରେ ମୁଁ ଉଠିବାକୁ ଚେଷ୍ଟା କରିବାରୁ କେତେକ ସୂତା ଛିଡ଼ିଗଲା ଓ କେତେକ ଖୁଣ୍ଟି ଉପୁଡ଼ିଗଲା । ଫଳରେ ମୋ ବାଁ ହାତଟା ଟିକିଏ ଚଳାଇ ହେଲା । ମୁଣ୍ଡ ଟିକିଏ ଟେକି ହେଲା ।

ଜୀବଗୁଡ଼ାକ ପୁଣି ଥରେ ପଳାଇଗଲେ । ସେମାନଙ୍କ ଗୋଳମାଳ ମଧ୍ୟ ମୋତେ ଶୁଣାଯାଉଥାଏ । ଏହି ସମୟରେ ସେମାନଙ୍କ ଭିତରୁ ଜଣେ କଅଣ ଗୋଟାଏ ହୁକୁମ ଦେଲାପରି ଶୁଣାଗଲା । ସଙ୍ଗେ ସଙ୍ଗେ ଅତି ସରୁ ଛୋଟ ଛୁଞ୍ଚିପରି ପ୍ରାୟ ଶହେ ପର୍ଯ୍ୟନ୍ତ ଶର ମୋ ଦେହରେ ଅସି ବାଜିଲା ।

ମୋତେ ଏତେ ବାଧିଲା ଯେ ମୁଁ ଚିତ୍କାର କରିବାକୁ ଲାଗିଲି । ଉଠିବାକୁ ଆଉ ଥରେ ଚେଷ୍ଟା କରିବା ସଙ୍ଗେ ସଙ୍ଗେ ପୁଣି ମୋ ଉପରେ ପୂର୍ବପରି ଶରବୃଷ୍ଟି ହେଲା । ଭାବିଲି ଯେ ସନ୍ଧ୍ୟା ହେବାଯାଏ ନୀରବରେ ପଡ଼ିରହିବା ଭଲ । ବାମ ହାତର ସୂତାଗୁଡ଼ିକ ଟିକିଏ ଫିଟି ଯାଇଥାଏ । ରାତିରେ ଅଉସବୁ ସୂତା ଛିଣ୍ଡାଇଦେବାକୁ ମୁଁ ମନେ ମନେ ସ୍ଥିର କଲି ।

ମୁଁ ଚୁପ୍ କରି ପଡ଼ିରହିଥାଏଁ । ମୋ ଉପରେ ଅଉ ଶର ବାଜିଲା ନାହିଁ । କିନ୍ତୁ ମୋ ଗୃହପାଖେ ସେମାନଙ୍କର ସଂଖ୍ୟା ବଢ଼ିବାରେ ଲାଗିଲେ । ଏଣେ ମୋ ବାଁ କାନଠାରୁ ତିନି ଚାରି ଗଜ ଦୂରରେ କଅଣ ଗୋଟାଏ କାମ ଚାଲିଥିବାର ଶବ୍ଦ ଶୁଣାଯାଉଥାଏ । ମୁଁ କଣେଇ କରି ଦେଖିଲି ଯେ ପ୍ରାୟ ହାତେ ଉଚ୍ଚର ଗୋଟାଏ ମଞ୍ଚା ତିଆରି ହେଉଛି । ତା ଉପରକୁ ଉଠିବାପାଇଁ ପାହାଚ ମଧ୍ୟ ହୋଇଛି । ମଞ୍ଚାଉପରେ ସେହି ଜୀବମାନଙ୍କରୁ ପାଞ୍ଚଟି ପର୍ଯ୍ୟନ୍ତ ଠିଆ ହେବାକୁ ସ୍ଥାନ ଥିଲା । ଜଣେ ଲୋକ ତା ଉପରେ ଚଢ଼ି

କଅଣ ଗୋଟାଏ ଲମ୍ବା ବକ୍ତୃତା ଦେଲା । ସେଥିରୁ ମୁଁ ଲେଶ ମାତ୍ର ବୁଝିପାରିଲି ନାହିଁ । ମୋର ମନେ ହୁଏ, ବକ୍ତା ଜଣକ ସେ ଦେଶର ଜଣେ ଉଚ୍ଚ ଧର୍ମଗୁରୁ ହେବେ ।

— ୩ —

ସେହି ଧର୍ମଗୁରୁଙ୍କ ଆଦେଶରେ ପ୍ରାୟ ପଚିଶ ଜଣ ଆସି ମୋର ଡାହାଣ ପାଖ ସୂତାଗୁଡ଼ିକ କାଟିଦେଲେ । ମୁଁ ଟିକିଏ କଡ଼ ଲେଉଟାଇପାରିଲି । ମୋର ଦୃଷ୍ଟି ସେହି ଧର୍ମଗୁରୁଙ୍କ ଉପରେ ପଡ଼ିଲା । ଦେଖିଲି ଯେ ସେ ଅନ୍ୟମାନଙ୍କଠାରୁ ବେଶୀ ଉଚ୍ଚ । ତାଙ୍କର ବୟସ ପ୍ରାୟ ଛବିଶ ହେବ । ସେ ଜଣେ ଉତ୍ତମ ବକ୍ତା ହୋଇଥିବାର ଅନୁମାନ କଲି । ତାଙ୍କ ଅଙ୍ଗଭଙ୍ଗୀରୁ ଜଣା ଯାଉଥିଲା ଯେ ସେ ବେଳେବେଳେ ମୋତେ ଭୟ ଦେଖାଉଥିଲେ ଓ ବେଳେ-ବେଳେ ସଦୟ ବ୍ୟବହାରର ଆଶା ଦେଉଥିଲେ ।

ଏହି ବକ୍ତୃତା ମୋତେ ଲକ୍ଷ୍ୟ କରି ଦିଆଯାଉଥିଲା । ମୁଁ ତାର ଉତ୍ତରରେ ବଡ଼ ନମ୍ରତା ପ୍ରକାଶ କରି ଠାରଦ୍ୱାରା ଜଣାଇଦେଲି ଯେ କାହାର ଅନିଷ୍ଟ କରିବା ମୋର ଉଦ୍ଦେଶ୍ୟ ନୁହେଁ । ସେତେବେଳକୁ ଭୋକରେ ମୋର ପେଟ ଜଳି ଯାଉଥାଏ । ମୁଁ ପେଟ ଦେଖାଇ, ହାତକୁ ମୁହଁରେ ପୂରାଇ ଠାରଦ୍ୱାରା ମୋତେ କିଛି ଖାଇବାକୁ ଦେବାପାଇଁ ଜଣାଇଲି ।

ପରେ ଜାଣିଲି, ସେହି ଉଚ୍ଚ ଧର୍ମଗୁରୁଙ୍କର ଉପାଧି ହେଉଛି ହୁର୍ଗୋ । ସେ ମୋ ମନକଥା ବୁଝିପାରି ମଞ୍ଚାରୁ ଓହ୍ଲାଇ କେତେ ଜଣଙ୍କୁ କଅଣ ଆଦେଶ ଦେଲେ; ସେମାନେ ମୋ ଶ୍ବରପାଖେ ଗୁଡ଼ାଏ ନିଶୁଣୀ ପକାଇଦେଲେ । ତା ଉପରେ ପ୍ରାୟ ଶହେ ଜଣ ପର୍ଯ୍ୟନ୍ତ ଚଢ଼ି ମୋ ମୁହଁ ପାଖକୁ ଗଲେ । ହୁକୁମ ପାଇ

ସେମାନେ ଟୋକେଇରେ ଖାଦ୍ୟ ନେଇ ମୋ ମୁହଁରେ ଅଜାଡ଼ି-ଦେଲେ । ସେମାନଙ୍କର ଶହେ ପାଞ୍ଚ ଟୋକେଇ ଖାଦ୍ୟ ମୋର ଗଳାକୁ ନଅଣ୍ଟ ହେଉଥାଏ । ଖାଦ୍ୟ ମଧ୍ୟରେ ରୁଟି ଓ ମାଂସ ପ୍ରଧାନ । ଗୋଟିଏ ଗୋଟିଏ ରୁଟି ଛରଡ଼ ପରି ଦିଶୁଥାଏ । ମୁଁ ଏକାଥରକେ ଦଶ ବାରଟି ରୁଟି ଓ ଶହେ ପାଞ୍ଚ ଟୋକେଇ ମାଂସ ଖାଉଥିବାର ଦେଖି ସେମାନେ ବଡ଼ ଆଶ୍ଚର୍ଯ୍ୟ ହୋଇ ଯାଉଥାନ୍ତି ।

ପେଟ ପୂରିବାପରେ ମୁଁ ଠାରରେ ପିଇବାକୁ ମାଗିଲି । ଉଚ୍ଚରେ ଏତେ କମ୍ ହେଲେ ମଧ୍ୟ ସେମାନଙ୍କର ବେଶ୍ ବୁଦ୍ଧି ଥିଲା । ସେମାନେ ଦେଖିଲେ ଯେ ଗିଲାସେ ଦୁଇ ଗିଲାସ ପାନୀୟ ଦ୍ରବ୍ୟରେ ମୋର ଶୋଷ ଯିବ ନାହିଁ । ତେଣୁ ସେମାନେ କୌଶଳରେ ଗୋଟିଏ ପିପାରେ ମଦ ଭର୍ତ୍ତି କରି ମୋ ମୁହଁ ପାଖକୁ ନେଇ ଫିଟାଇ-ଦେଲେ । ମୋର ଢୋକକରେ ସେହି ପିପାର ମଦ ସରିଗଲା । ସେହିପରି ଆଉ ଗୋଟିଏ ପିପାର ମଦ ମଧ୍ୟ ପିଇସାରି ପୁଣି ପିଇବାକୁ ଠାରିଲି; କିନ୍ତୁ ଆଉ ମଦ ନ ଥିଲା । ଅଗତ୍ୟା ସେତିକି ପିଇ ମୋତେ ସନ୍ତୁଷ୍ଟ ହେବାକୁ ପଡ଼ିଲା ।

ମୋ ଛାତିଉପରେ ପ୍ରାୟ ପଚିଶ ଜଣ ଛିଡ଼ା ହୋଇଥିଲେ । ମୋର ଖାଇବା ପିଇବା ସେମାନଙ୍କୁ ବଡ଼ ଆଶ୍ଚର୍ଯ୍ୟ ଲାଗିଲା । ସେମାନେ ଆନନ୍ଦରେ ମୋର ଦେହଉପରେ ନାଚିଗଲେ । ସେତେବେଳେ ମୋର ମନେ ହେଉଥାଏ କି ସେମାନଙ୍କୁ ମୁଠା ମୁଠା କରି ଚାପି ତଳେ ଫିଙ୍ଗି ଦିଅନ୍ତି । କିନ୍ତୁ ଶପଥର କଥା ମନେ ପକାଇ ଚୁପ୍ ହୋଇ ସବୁ ଅତ୍ୟାଚାର ସହିଗଲି ।

କିଛି ସମୟପରେ ରାଜାଙ୍କର ଜଣେ ଉଚ୍ଚ କର୍ମଚାରୀ ଦଶ ବାର ଜଣ ନିମ୍ନ କର୍ମଚାରୀଙ୍କ ସଙ୍ଗେ ମୋ ଡାହାଣ ଗୋଡ଼ ଉପର ବାଟେ ଆସି ମୋ ମୁହଁ ପାଖରେ ଛିଡ଼ା ହେଲେ । ସେ ପ୍ରାୟ

ଦଶ ମିନଟ ଯାଏ ମୋତେ କଅଣ ଗୁଡ଼ାଏ କହିଲେ । ମଝିରେ ମଝିରେ ଗୋଟାଏ ଦଗକୁ ହାତରେ ଦେଖାଉଥାନ୍ତି । ପରେ ମୁଁ ବୁଝିଲି ଯେ ସେ ଅଧମାଇଲ ଦୂରରେ ଥିବା ରାଜଧାନୀକୁ ମୋତେ ନଅଯିବ ବୋଲି କହୁଥିଲେ ।

ମୁଁ ତାଙ୍କ କଥାରୁ ବନ୍ଦୁବିସର୍ଗ ବୁଝିପାରିଲି ନାହିଁ । ବନ୍ଧନରୁ ମୁକ୍ତି ପାଇବାକୁ ଚାହେଁ ବୋଲି କହିଲି ଓ ସେ ମୋ କଥା ବୁଝି ପାରୁ ନ ଥିବେ ଜାଣି ଯଥାସମ୍ଭବ ଠାରଦ୍ୱାରା ତାହା ଜଣାଇଲି ।

ସେ ବୋଧ ହୁଏ ମୋ ଉଦ୍ଦେଶ୍ୟ ବୁଝିପାରିଲେ । ମୁଣ୍ଡ ହଲାଇ ଓ ହାତ ଦୁଇଟିକୁ ଛନ୍ଦ ସେ ମୋତେ ଜଣାଇଦେଲେ ଯେ ମୋତେ ମୁକ୍ତି ମିଳିବ ନାହିଁ; କିନ୍ତୁ ସେ ମୋତେ ଅଙ୍ଗଭଙ୍ଗୀଦ୍ୱାରା ବୁଝାଇଦେଲେ ଯେ ମୋର ଖାଇବା ପିଇବାର ଅଭାବ ହେବ ନାହିଁ ଓ ମୋପ୍ରତି ଭଲ ବ୍ୟବହାର କରାଯିବ ।

ମୋ ମନ ବିଦ୍ରୋହୀ ହୋଇଉଠିଲା । ମୁଁ ପୁଣି ସୂତାଗୁଡ଼ାକ ଛିଣ୍ଡାଇବାର ଚେଷ୍ଟାକଲି । ସଙ୍ଗେ ସଙ୍ଗେ ଶରବୃଷ୍ଟି ଚାଲିଲା । ସେତେବେଳକୁ ଶରର ଆଘାତରେ ମୋ ଦେହ ପୋଡ଼ି ଜଳି ଯାଉଥାଏ । ମୁଁ ଦେଖିଲି ଯେ ବଳ ପ୍ରୟୋଗ କରିବାରେ ଲାଭ ନାହିଁ । ମୁଁ ଚୁପ୍ କରି ପଡ଼ିରହିଲି । ଶର ମଧ୍ୟ ବନ୍ଦ ହେଲା ।

କେତେ ଜଣ ଲୋକ ଆସି ମୋ ଦେହରେ ଲାଗିଥିବା ଶର-ଗୁଡ଼ିକ କାଢ଼ିନେଇ କ୍ଷତରେ ଏକପ୍ରକାର ସୁଗନ୍ଧ ମଲମ ଲଗାଇ-ଦେଲେ । ଆଉ ଦଳେ ଲୋକ ମୋ ବାଁ ପାଖର ସୂତାଗୁଡ଼ାକୁ ଢ଼ିଲା କରିଦେଲେ । ମୁଁ ଟିକିଏ କଡ଼ ଲେଉଟାଇପାରିଲି ।

ଖାଇପିଇ ସାରିବା ପରେ ଟିକିଏ ଆରାମ ଲାଗିଲା । ମଲମ ଲଗିବାରୁ ଦେହର ପୋଡ଼ାଜଳା ଉଭେଇଗଲା । ମୁଁ ନିଶ୍ଚିନ୍ତରେ

ଶୋଇପଡ଼ିଲି । ପରେ ଜଣାଗଲା ଯେ ମୁଁ ପୂରା ଆଠଘଣ୍ଟା ଶୋଇ-ପଡ଼ିଥିଲି ।

ବୋଧ ହୁଏ ମୋତେ ସମୁଦ୍ରକୂଳ ନିକଟରେ ଶୋଇଥିବାର ଦେଖି କେହି ରାଜାଙ୍କ ପାଖକୁ ସମ୍ବାଦ ପଠାଇଥିଲେ । ରାଜା ମନ୍ତ୍ରିପରିଷଦର ପରାମର୍ଶରେ ମୋତେ ଏପରି ବାନ୍ଧି ରଖାଇଥିଲେ । ମୋତେ ବନ୍ଦୀଭାବରେ ରାଜଧାନୀକୁ ନେବାପାଇଁ ଗୋଟିଏ ପ୍ରକାଣ୍ଡ ଯନ୍ତ୍ରର ବ୍ୟବସ୍ଥା ମଧ୍ୟ କରାଇଥିଲେ । ମୁଁ ଶୋଇଥିବାରୁ କିଛି ଜାଣି ପାରି ନ ଥିଲି ।

— ୪ —

ଏହି ବାମନରାଜ୍ୟର ଲୋକେ ବଡ଼ ଜ୍ଞାନୀ । ସେମାନେ ବଡ଼ ସୁନ୍ଦର ଯନ୍ତ୍ରପାତି ତିଆରି କରିପାରନ୍ତି । ରାଜା ବିଦ୍ୱାନ୍ ଲୋକଙ୍କୁ ଆଦର କରନ୍ତି ଓ ଯନ୍ତ୍ରାଦିନିର୍ମାଣରେ ବିଶେଷ ଉତ୍ସାହ ଦଅନ୍ତି । ଗଛ ପ୍ରଭୃତି ଓଜନିଆ ଜିନିଷ ବୁହାଇ ନେବାପାଇଁ ରାଜାଙ୍କର ଅନେକ ଯନ୍ତ୍ର ଅଛି ।

ରାଜାଙ୍କର କେତେକ ବଡ଼ ବଡ଼ ଯୁଦ୍ଧଜାହାଜ ମଧ୍ୟ ଅଛି । ସେଥିମଧ୍ୟରୁ କେତେକର ଲମ୍ବ ୮।୯ ଫୁଟ । ଏହି ବିରାଟ ଯୁଦ୍ଧ-ଜାହାଜମାନ ଜଙ୍ଗଲରେ ତିଆରି ହୋଇ ଯନ୍ତ୍ରସାହାଯ୍ୟରେ ସମୁଦ୍ର-କୂଳକୁ ବୁହା ହୋଇ ଯାଏ ।

ପାଞ୍ଚ ଶହ କାରିଗର ଲାଗି ମୋତେ ନେବା ସକାଶେ ଗୋଟିଏ ଯନ୍ତ୍ର ତିଆରି କରିଥିଲେ । ୭ ଫୁଟ ଲମ୍ବ ଓ ୪ ଫୁଟ ଚଉଡ଼ାର ଗୋଟିଏ ଗାଡ଼ି ୨୨ଟି ଚକ ଉପରେ ଥିଲା । ଏହା ରାଜଧାନୀରୁ ତିଆରି ହୋଇ ଆସି ମୋ ପାଖରେ ରଖାଯାଇଥିଲା । ମୁଁ ଶୋଇଥିବାରୁ ଏସବୁ କିଛି ଜାଣିପାରି ନ ଥିଲି ।

ପ୍ରଧାନ ସମସ୍ୟା ହେଲା ମୋତେ କିପରି ଟେକି ଗାଡ଼ି-ଉପରକୁ ନିଆଯିବ ?

ମୋର ଦୁଇ ପାଖରେ ପ୍ରାୟ ଫୁଟେ ଉଚ୍ଚ ଅଶିଟି ଖୁଣ୍ଟ ପୋତାଗଲା । ଖୁଣ୍ଟ ଅଗରେ ଗରଡ଼ି (Pulley) ଲଗିଥାଏ । ପ୍ରାୟ ତିନିଶ ଲୋକ ମୋ ହାତ ଗୋଡ଼ ପ୍ରଭୃତି ଶକ୍ତ ଦଉଡ଼ିରେ ବାନ୍ଧିଲେ । ସେମାନେ ଗରଡ଼ିରୁ ଦଉଡ଼ିମାନ ଆଣି ଏ ଦଉଡ଼ି ସଙ୍ଗେ ବାନ୍ଧି ଟାଣିଲେ । ଅଳ୍ପେ ଅଳ୍ପେ ମୁଁ ଉପରକୁ ଉଠିଲି । ମୁଁ ଯନ୍ତ୍ରର ପଟାଉପରକୁ ଉଠିବା ପରେ ଦଉଡ଼ିଟଣା ବନ୍ଦ ହେଲା । ଏଥିରେ ଶହ ଶହ ଲୋକଙ୍କୁ ତିନି ଘଣ୍ଟା ପର୍ଯ୍ୟନ୍ତ କଠିନ ପରିଶ୍ରମ କରିବାକୁ ହୋଇଥିଲା । ରାଜସରକାରଙ୍କର ସବୁଠାରୁ ବଡ଼ ପନ୍ଦର ଶହ ଘୋଡ଼ା ଏହି ଯନ୍ତ୍ରକୁ ଟାଣି ରାଜଧାନୀ ଆଡ଼କୁ ଚାଲିଲେ । ଅବଶ୍ୟ ଘୋଡ଼ାଗୁଡ଼ିକ ପ୍ରାୟ ସାଢ଼େ ଚାରି ଇଞ୍ଚରୁ ବେଶୀ ଉଚ୍ଚ ନ ଥିଲେ ।

ସେ ଦିନଯାକ ଗାଡ଼ି ଚାଲିଲା । ରାତିରେ ଗୋଟାଏ ଜାଗାରେ ବିଶ୍ରାମ ନେବାକୁ ହେଲା । ମୋର ଦୁଇ ପାଖେ ପାଞ୍ଚଶ ଲେଖାଏଁ ଜଗୁଆଳି ରହିଲେ । ଅଧେ ଜଗୁଆଳି ଅଲୁଅ ଧରିଥାନ୍ତି । ବାକି ଅଧକ ଧନୁଶର ଧରି ପ୍ରସ୍ତୁତ ରହିଥାନ୍ତି । ମୁଁ ବନ୍ଧନରୁ ଖସିଯିବାର ଚେଷ୍ଟା କଲେ ଶର ମାରିବାକୁ ସେମାନଙ୍କୁ ଆଦେଶ ଥାଏ ।

ସକାଳ ହେଲା । ପୁଣି ଆମ ଗାଡ଼ି ଚାଲିଲା । ଦୁଇପହର ବେଳକୁ ଆମେ ସହର ଫାଟକଠାରୁ ପ୍ରାୟ ଦୁଇଶ ଗଜ ଦୂରରେ ପହଞ୍ଚିଲୁଁ । ରାଜା ତାଙ୍କର ପାରିଷଦଙ୍କ ସହିତ ମୋତେ ଦେଖିବାକୁ ଆସିଲେ । ରାଜା ମୋ ଉପରେ ଚଢ଼ିବାକୁ ବାହାରିଥିଲେ; କିନ୍ତୁ ପାରିଷଦମାନେ ତାଙ୍କୁ ଏପରି ବିପଦପୂର୍ଣ୍ଣ ଚେଷ୍ଟାରୁ ବିରତ କଲେ । ଗାଡ଼ି ଯେଉଁଠି ରହିଲା ତା ପାଖରେ ଗୋଟିଏ ପୁରୁଣା ଦେଉଳ ଥିଲା । ସେଇଟି ହେଉଛି ରାଜ୍ୟର ସବୁଠାରୁ ବଡ଼ ମନ୍ଦିର । ତାହା

ଖାଲି ପଡ଼ିଥିଲା; ତେଣୁ ସେଥିରେ ମୋର ରହିବା ସ୍ଥିର ହେଲା । ଦେଉଳର ଉତ୍ତର ପାଖରେ ଥିବା ଫାଟକଟିର ଉଚ୍ଚତା ପ୍ରାୟ ଫୁଟ ଏବଂ ଓସାର ଦୁଇ ଫୁଟ ହେବ । ଏହି ବାଟେ ଗୁରୁଣ୍ଡି ଗୁରୁଣ୍ଡି ଭିତରକୁ ଯିବା ମୋ ପକ୍ଷରେ ବିଶେଷ କଷ୍ଟକର ନ ଥିଲା ।

ଫାଟକର ଦୁଇ ପାଖେ ପ୍ରାୟ ଛଅ ଇଞ୍ଚ ଉଚ୍ଚରେ ଦୁଇଟି ଝରକା ଥିଲା । ବାଁ ପାଖ ଝରକାବାଟେ ରାଜାଙ୍କ କାରିଗର ପ୍ରାୟ ଶହେଟି ଶିକୁଳି ଗଳାଇଲେ । ଏହି ଶିକୁଳି ସହିତ ମୋର ବାମ ପାଦକୁ ୩୬ଟି ତାଲାଦ୍ୱାରା ବାନ୍ଧି ଦିଆଗଲା ।

ଦେଉଳ ଆଗରେ କିଛି ଦୂରରେ ଗୋଟିଏ ଗମ୍ବୁଜ ଥିଲା । ତାର ଉଚ୍ଚତା ପ୍ରାୟ ୫ ଫୁଟ ହେବ । ସମ୍ରାଟ କେତେକ ଉଚ୍ଚ ପାରିଷଦଙ୍କ ସହ ତା ଉପରକୁ ଉଠି ମୋତେ ଦେଖିଥିଲେ । ସେଦିନ ସହରର ପ୍ରାୟ ଲକ୍ଷେ ଲୋକ ମୋତେ ଦେଖିବାପାଇଁ ଆସିଥିଲେ ଏବଂ ସେମାନଙ୍କ ମଧ୍ୟରୁ ଅନ୍ତତଃ ଦଶ ହଜାର ଲୋକ ଶିଢ଼ି ସାହାଯ୍ୟରେ ମୋ ଉପରକୁ ଉଠିଥିଲେ । ଜଗୁଆଳମାନେ ଚେଷ୍ଟା କରି ନ ଥିଲେ ବୋଧ ହୁଏ ସମସ୍ତେ ମୋ ଉପରକୁ ଯାଇଥାନ୍ତେ । ଯାହା ହେଉ, ଅଳ୍ପ କାଳପରେ ସରକାରୀ ହୁକୁମ ଜଣାଇ ଦିଆଗଲା ଯେ ମୋ ଉପରକୁ କେହି ଚଢ଼ିଲେ ତାକୁ ପ୍ରାଣଦଣ୍ଡ ଦିଆଯିବ ।

—୫—

କାରିଗରମାନେ ପରୀକ୍ଷା କରି ଦେଖିଲେ ଯେ ମୋ ପକ୍ଷରେ ବନ୍ଧନରୁ ଖସିଯିବା ଅସମ୍ଭବ । ତହୁଁ ମୋ ଦେହରେ ବନ୍ଧା ହୋଇଥିବା ଦଉଡ଼ିଗୁଡ଼ିକୁ କାଟି ଦିଆଗଲା । ମୁଁ ଅତି ଦୁଃଖିତ ହୋଇ ଠିଆ ହେଲି । ମୋର ଚାଲିବା ଦେଖି ଲୋକମାନେ ବିସ୍ମୟରେ

ଚଳାଚଳ କଲେ ଉଠିଲେ । ଶିକୁଳିଗୁଡ଼ିକର ଲମ୍ବ ପ୍ରାୟ ଦୁଇ ଗଜ ଥିଲା । ତେଣୁ ମୁଁ ଅର୍ଦ୍ଧବୃତ୍ତାକାରରେ ଟିକିଏ ମାତ୍ର ଆଗକୁ ଓ ପଛକୁ ଯାଇ ଆସି ପାରୁଥିଲି । କିନ୍ତୁ ଲମ୍ବ ହୋଇ ଶୋଇବାରେ ମୋର କିଛି ଅସୁବିଧା ହେଉ ନ ଥିଲା ।

ମୁଁ ଠିଆ ହୋଇ ଚାରିଆଡ଼କୁ ଚାହିଁଲି । ବାସ୍ତବରେ ଏପରି ସୁନ୍ଦର ଦୃଶ୍ୟ ମୁଁ ଜୀବନରେ ଦେଖି ନ ଥିଲି । ଚାରିପାଖେ ଦେଶଟି-ଯାକ ବଗିଚା ପରି ବୋଧ ହେଉଥିଲା । କ୍ଷେତଗୁଡ଼ିକ ଶ୍ଳେଟ ବର୍ଗାକାରର ପଟାଳି ପରି ଦିଶୁଥିଲା । କିଆରିମାନଙ୍କ ମଝିରେ ମଝିରେ ଜଙ୍ଗଲ ଦେଖାଯାଉଥାଏ । ସବୁଠାରୁ ବଡ଼ ବଡ଼ ଗଛମାନଙ୍କର ଉଚ୍ଚତା ୭ ଫୁଟ ହେବ । ମୋ ବାଁ ପାଖରେ ସହରଆଡ଼କୁ ଦୃଷ୍ଟି ପକାଇଲି । କି ସୁନ୍ଦର । ସତେ ଅବା ରଙ୍ଗମଞ୍ଚର ପର୍ଦ୍ଦାଉପରେ ଗୋଟିଏ ସହରର ଛବି ଚିତ୍ର ହୋଇଛି ।

ବଡ଼ କ୍ଳାନ୍ତ ହୋଇଥିବାରୁ ମୁଁ ଫାଟକ ବନ୍ଦ କରି ଶୋଇବାକୁ ଚେଷ୍ଟା କଲି । କିନ୍ତୁ ଲୋକଙ୍କଠାରୁ ରକ୍ଷା ପାଇବାର ଉପାୟ ନ ଥିଲା । ମୁଁ ଉଠି କିଛି ସମୟ ଯାଏ ଆଗକୁ ପଛକୁ ଯିବା ଆସିବା କଲି ।

ମହାରାଜା ଗମ୍ବୁଜରୁ ଓହ୍ଲାଇ ଘୋଡ଼ାରେ ବସି ମୋ ଆଡ଼କୁ ଆସିଲେ । ଘୋଡ଼ାଟି ଖୁବ୍ ଶିକ୍ଷିତ ହେଲେହେଁ ମୋପରି ମନୁଷ୍ୟ କେବେ ଦେଖି ନ ଥିଲା । ବୋଧ ହୁଏ ମୋତେ ଦେଖି ସେ ମନେ କଲା ଯେ ଗୋଟାଏ ପାହାଡ଼ ଯିବା ଆସିବା କରୁଛି । ସେ ଆଗ ଦୁଇ ଗୋଡ଼ ଟେକି ଅଥୟ ହେଲା । ମହାରାଜା ଜଣେ ପ୍ରସିଦ୍ଧ ଅଶ୍ୱାରୋହୀ । ତେଣୁ ସେ କୌଣସିମତେ ଘୋଡ଼ାକୁ ଅଟକାଇ କରି ରଖିଲେ । ଏଥିମଧ୍ୟରେ କେତେ ଜଣ ଚାକର ଧାଇଁ ଆସି ଘୋଡ଼ାକୁ ଜବତ କରି ଧରିବାରୁ ମହାରାଜା ଓହ୍ଲାଇ ପଡ଼ିଲେ ।

ମହାରାଜା ମୋଠାରୁ ଟିକିଏ ଦୂରରେ ଛିଡ଼ା ହୋଇ ମୋତେ ନିରେଖି ଦେଖିଲେ । ମୋତେ ଖାଇବାପାଇଁ ଖାଦ୍ୟ ଓ ପିଇବା ପାଇଁ ମଦ୍ୟ ଆଣିବାକୁ ଆଦେଶ ଦେଲେ । ସେମାନେ ଏକଚକିଆର ଗାଡ଼ିରେ ଖାଦ୍ୟ ଓ ପାନୀୟ ଆଣି ମୋ ପାଖେ ପହଞ୍ଚାଇଦେଲେ । ଦଶଟି ଗାଡ଼ିରେ ମଦ ଓ କୋଡ଼ିଏଟି ଗାଡ଼ିରେ ସିଝା ମାଂସ ଆସିଥିଲା । ଅଳ୍ପ ସମୟଭିତରେ ମୁଁ ଗାଡ଼ିଗୁଡ଼ିକୁ ଶୂନ୍ୟ କରିଦେଲି । ଗାଡ଼ିଏ ମାଂସ ମୋର ଦୁଇ ତିନି କଲରୁ ବେଶୀ ହେଉ ନ ଥାଏ । ମଦସବୁ ବୋତଲରେ ଭର୍ତ୍ତି ହୋଇ ଆସିଥିଲା । ସବୁ ବୋତଲର ମଦକୁ ମୁଁ ଗୋଟିଏ ପାତ୍ରରେ ଢାଳି ଏକାଥରକେ ପିଇଦେଲି ।

ମହାରାଣୀ, ଯୁବରାଜ, ରାଜକନ୍ୟା ପ୍ରଭୃତି କିଛି ଦୂରରେ ଗୋଟିଏ ମଞ୍ଚାଉପରେ ଦାସଦାସୀଙ୍କ ସହ ବସିଥିଲେ । ମହାରାଜାଙ୍କର ଘୋଡ଼ା ଅସ୍ଥିର ହୋଇଉଠିବାରୁ ସେମାନେ ମଞ୍ଚାରୁ ଓହ୍ଲାଇ ତାଙ୍କ ପାଖକୁ ଆସିଲେ । ତେଣୁ ମୁଁ ସେମାନଙ୍କୁ ଦେଖିବାର ସୁଯୋଗ ପାଇଲି ।

ମହାରାଜା ଯେକୌଣସି ପାରିଷଦଠାରୁ ଅଧିକ ଉଚ୍ଚହେବେ । ତାଙ୍କଠାରେ ଏପରି ଗାମ୍ଭୀର୍ଯ୍ୟ ଥିଲା ଯେ ଦେଖିବା ଲୋକର ସ୍ୱତଃ ଭୟ ଓ ଭକ୍ତି ଜାତ ହେବ । ତାଙ୍କର ଗୁଲିଚଳନ ଉଦ୍ରେକିତ ଓ ଗାମ୍ଭୀର୍ଯ୍ୟପୂର୍ଣ୍ଣ ଥିଲା । ତାଙ୍କର ପ୍ରୌଢ଼ାବସ୍ଥା ଆସିଥିଲା । ପରେ ଶୁଣିଲି ଯେ ସେ ସୁଖରେ ସାତ ବର୍ଷ ରାଜତ୍ୱ କରି ସାରି-ଥିଲେ । ତାଙ୍କର ପରିଚ୍ଛଦରେ ଆଡ଼ମ୍ବର ନ ଥିଲା । ସେ ମସ୍ତକରେ ରତ୍ନଖଚିତ ସ୍ୱର୍ଣ୍ଣମୁକୁଟ ପିନ୍ଧିଥିଲେ ।

କାଳେ ମୁଁ କିଛି ଅନିଷ୍ଟ କରିବି, ଏହି ଆଶଙ୍କାରେ ସେ ହାତରେ ଗୋଟିଏ ଖଣ୍ଡା ଧରିଥିଲେ । ତାର ଲମ୍ବା ପ୍ରାୟ ୩ ଇଞ୍ଚ ହେବ । ତାର ମୁଠା ଓ ଖୋପ ସୁନାରେ ତିଆରି ହୋଇଥିଲା ।

ମହାରାଣୀ ଓ ତାଙ୍କର ଦାସଦାସୀମାନେ ପାରିଷଦଙ୍କ ପରି ଖୁବ୍ ଅଡ଼ମ୍ବରପୂର୍ଣ୍ଣ ପୋଷାକ ପିନ୍ଧିଥିଲେ । ଫଳରେ ସେ ସ୍ଥାନଟି ଅତି ସୁନ୍ଦର ଦେଖାଯାଉଥିଲା ।

ମହାରାଜା ମୋତେ ଅନେକ କଥା କହୁଥାନ୍ତି; ମୁଁ ମଧ୍ୟ ଯଥାସାଧ୍ୟ ଉତ୍ତର ଦେଉଥାଏଁ; କିନ୍ତୁ କେହୁ କାହାର କଥା ବୁଝି ପାରୁ ନ ଥାଉଁ । ମୁଁ ଯେତେ ଭାଷା ଜାଣିଥିଲି, ସବୁ ଭାଷାରେ କହିଲି; ମାତ୍ର କିଛି ଲାଭ ହେଲା ନାହିଁ ।

— ୬ —

ପ୍ରାୟ ଦୁଇ ଘଣ୍ଟାପରେ ମହାରାଜା ପାରିଷଦମାନଙ୍କ ସହିତ ଚାଲିଗଲେ । ଲୋକଗହଳିରୁ ଅଯତ୍ତ କରି ରଖିବାପାଇଁ ମୋ ପାଖରେ ଦଳେ ସୈନ୍ୟ ଜଗି ରହିଲେ । ମୁଁ ଫାଟକ ପାଖରେ ବସିଥାଏଁ । ଏହି ସମୟରେ କେତେ ଜଣ ଲୋକ ମୋ ଉପରକୁ ଶର ମାରିଲେ । ସେଥିରୁ ଗୋଟିଏ ମୋର ବାଁ ଆଖି ପାଖ ଦେଇ ଚାଲିଗଲା । ଅଳ୍ପକେ ମୁଁ ରକ୍ଷା ପାଇଗଲି । ସୈନ୍ୟଦଳର ନେତା ଏହି ଦୁଷ୍ଟମାନଙ୍କ ଭିତରୁ ଛଅ ଜଣଙ୍କୁ ଧରିଆଣି ମୋତେ ଦେବାକୁ ଆଦେଶ ଦେଲେ । ସୈନ୍ୟମାନେ ଛଅ ଜଣଙ୍କର ହାତ ବାନ୍ଧି ସେମାନଙ୍କୁ ବର୍ଚ୍ଛା ଅଗରେ ଠେଲି ଠେଲି ମୋ ପାଖକୁ ଆଣିଲେ । ବୋଧ ହୁଏ ସୈନିକଦଳର ନେତା ଭାବିଥିଲେ ଯେ ସେମାନଙ୍କର ଦଣ୍ଡର ଭାର ମୋ ଉପରେ ଛାଡ଼ିଦେବା ଉଚିତ ହେବ ।

ମୁଁ ସେମାନଙ୍କ ମଧ୍ୟରୁ ପାଞ୍ଚ ଜଣଙ୍କୁ ନେଇ ମୋ ପକେଟରେ ରଖିଦେଲି । ଷଷ୍ଠ ଜଣକୁ ଦୁଇ ଆଙ୍ଗୁଠିରେ ଧରି କଞ୍ଚା ଖାଇବାର ଛଳନା କରି ପାଟି ପାଖକୁ ନେଲି । ଲୋକଟା ଭୟରେ ଚିତ୍କାର କରିଉଠିଲା । ମୁଁ ଆଉ ପକେଟରୁ ଛୁରୀ ବାହାର କରିବାର ଦେଖି

ଲୋକଟିର ଭୟ ବୃଦ୍ଧି ପାଇଲା । ସୈନ୍ୟମାନେ ମଧ୍ୟ କ୍ଷୁଃଣ୍ଣିତ ହେଲପରି ଜଣାଗଲା । କିନ୍ତୁ ମୁଁ ଧୀରଭାବରେ ଛୁରୀରେ ତା ହାତର ବନ୍ଧନକୁ କାଟିଦେଇ ତାକୁ ତଳେ ଛାଡ଼ିଦେଲି । ଲୋକଟା ମୋ ପାଖରୁ ଦୂରକୁ ପଳାଇଗଲା । ଏହାପରେ ପକେଟରୁ ଜଣ ଜଣ କରି ବନ୍ଦୀମାନଙ୍କୁ ବାହାର କରି ସେମାନଙ୍କୁ ବନ୍ଧନମୁକ୍ତ କରି ଛାଡ଼ିଦେଲି । ମୋର ଏହି କାର୍ଯ୍ୟ ଦେଖି ସୈନ୍ୟମାନେ ଓ ଲୋକ-ସାଧାରଣ ଖୁବ୍ ଆନନ୍ଦ ପ୍ରକାଶ କଲେ । ମୋର ଏହି ସଦୟ ବ୍ୟବହାର କଥା ପରେ ରାଜାଙ୍କୁ ଜଣାଇ ଦିଆ ଯାଇଥିଲା । ଫଳରେ ସେ ଓ ତାଙ୍କର ପାରିଷଦମାନେ ମୋ ବିଷୟରେ ଉଚ୍ଚ ଧାରଣା ପୋଷଣ କରିଥିଲେ ।

ରାତରେ ମୋତେ ଭୂଇଁ ଉପରେ ଶୋଇବାକୁ ହେଲା । ତାପରେ ପନ୍ଦର ଦିନ ପର୍ଯ୍ୟନ୍ତ ସେହିପରି ତଳେ ଶୋଇବାକୁ ପଡ଼ିଥିଲା । ଏଥିମଧ୍ୟରେ ରାଜାଙ୍କ ଆଦେଶରେ ମୋପାଇଁ ଗୋଟିଏ ବିଛଣା ତିଆରି ହେଲା । ଗାଡ଼ିରେ ଛଅ ଶହ ବିଛଣା ଅଣାଯାଇ ମୋ ପାଖକୁ ଆସିଲା । ଦେଢ଼ ଶହ ବିଛଣାକୁ ଏକାଠି ଏକ ପ୍ରସ୍ଥ ବିଛଣା କରାଗଲା । ଏହିପରି ଚାରିପ୍ରସ୍ଥ ବିଛଣା ସିଲାଇ ହୋଇ ମୋର ବିଛଣା ତିଆରି ହେଲା । ତଥାପି ତାହା ଏତେ ପାତଳ ହୋଇଥିଲା ଯେ ରାତିରେ ସେଥିରେ ଶୋଇଲେ ମୋତେ କାଟୁଥାଏ । କ୍ରମେ ମୋପାଇଁ ଗୃହାଦିର ପ୍ରସ୍ତୁତିର ବ୍ୟବସ୍ଥା ହେଲା ।

ମୋ ପରି ଗୋଟିଏ ବିରାଟ ମନୁଷ୍ୟ ରାଜ୍ୟରେ ପହଞ୍ଚିଥିବାର ଖବର ସବୁଆଡ଼େ ବ୍ୟାପିଗଲା । ମଫସଲରୁ ଲୋକେ ଦଳ ଦଳ ହୋଇ ମୋତେ ଦେଖିବାକୁ ଆସିଲେ । ଏହା ଫଳରେ କୃଷିକାମ ବନ୍ଦ ହେବାକୁ ବସିଲା । ସହରରେ ବହୁ ଲୋକ ଜମିବାରୁ ଅନେକ ଅସୁବିଧା ହେଲା । ତେଣୁ ରାଜସରକାର ଇସ୍ତାହାରଦ୍ୱାରା ଜଣାଇଦେଲେ

ତଯ ସୈନ୍ୟମାନେ ମୋତେ ଦେଖିସାରିଛନ୍ତି ସେମାନଙ୍କୁ ନିଜ ଗ୍ରାମକୁ ଫେରିଯିବାକୁ ହେବ ।

ଏଥିମଧ୍ୟରେ ରାଜା ମନ୍ତ୍ରିମଣ୍ଡଳର ଅନେକ ସଭା ବସାଇ ମୋ ସମ୍ପର୍କରେ ବିଚାର କଲେ । ପରେ ପରିଷଦର ଜଣେ ଲୋକ ମୋତେ ବିଶ୍ୱାସରେ କହିଥିଲେ ଯେ ମୁଁ ରାଜ୍ୟର ଘୋର ଚିନ୍ତାର କାରଣ ହୋଇଥିଲି ।

ମୁଁ କାଳେ ବନ୍ଧିରୁ ଖସିଯାଇ ଅନିଷ୍ଟ କରିବି ଏ ଭୟ ଥିଲା । ମୁଁ ଯେତେ ଖାଉଥିଲି ସେଥିରେ ଅଳ୍ପ କାଳମଧ୍ୟରେ ଦୁର୍ଭିକ୍ଷ ପଡ଼ି-ପାରେ । କେହି କେହି ପ୍ରସ୍ତାବ କରିଥିଲେ ଯେ ମୋତେ ଉପାସ ରଖି ମାରିଦିଆଯାଉ । ଅନ୍ୟ କେତେକେ ବିଷାକ୍ତ ଶର ମାରି ମୋର ପ୍ରାଣ ନେବାର ପ୍ରସ୍ତାବ କରିଥିଲେ । କିନ୍ତୁ ପରେ ସ୍ଥିର ହେଲା ଯେ ଏପରି ମାରିବାଦ୍ୱାରା ବିପଦ ଅଛି । ମୋର ଶବ ପଚି ସାରା ରାଜ୍ୟରେ ରୋଗ ବିସ୍ତାର କରିବ ।

ଏହିପରି ବିଚାର ଚାଲିଥିଲାବେଳେ ସୈନ୍ୟବିଭାଗର କେତେ ଜଣ କର୍ମଚାରୀ ଉପସ୍ଥିତ ହୋଇ ଛଅ ଜଣ ଦୁଷ୍ଟ ଲୋକଙ୍କ ପ୍ରତି ସଦୟ ବ୍ୟବହାର ବିଷୟ ଜଣାଇଲେ । ଏହାଦ୍ୱାରା ପରିଷଦର ସମସ୍ତେ ମୋପ୍ରତି ସହାନୁଭୂତି ପ୍ରକାଶ କଲେ । ରାଜକୀୟ ଆଦେଶଦ୍ୱାରା ଜଣାଇ ଦିଆଗଲା ଯେ ସହରଠାରୁ ନଅ ଶହ ଗଜମଧ୍ୟରେ ଥିବା ଗ୍ରାମବାସୀମାନେ ପ୍ରତିଦିନ ମୋର ଆହାରପାଇଁ ଛଅଟି ଗୋରୁ, ଚାଳିଶଟି ମେଣ୍ଢା, କେତେକ ରୁଟି ଓ କିଛି ମଦ ଯୋଗାଇବେ । ଅବଶ୍ୟ ରାଜସରକାର ଏସବୁର ଉପଯୁକ୍ତ ମୂଲ୍ୟ ଦେବେ ।

ମୋର ସେବା କରିବାପାଇଁ ଛଅ ଶହ ଚାକର ନିଯୁକ୍ତ ରହିଲେ । ମୋ ଘରର ଦୁଇ ପାଖରେ ସେମାନଙ୍କପାଇଁ ତମ୍ବୁ ପଡ଼ିଲା । ସେମାନଙ୍କ ଖାଦ୍ୟପେୟର ମଧ୍ୟ ବ୍ୟବସ୍ଥା କରାଗଲା ।

ରାଜାଙ୍କ ଆଦେଶରେ ତିନି ଶହ ଦରଜୀ ମୋପାଇଁ ସେ ଦେଶ ଢଙ୍ଗରେ ପୋଷାକ ତିଆରି କରିବାରେ ଲାଗିଲେ । ସେ ଦେଶର ଭାଷା ମୋତେ ଶିଖାଇବାପାଇଁ ଛଅ ଜଣ ପଣ୍ଡିତଙ୍କୁ ନିଯୁକ୍ତ କରାଗଲା । ମୋର ବିଶାଳ ଆକାର ଦେଖି ରାଜାଙ୍କର ଘୋଡ଼ାସବୁ ଭୟ କରୁଥିବାରୁ ସେମାନଙ୍କ ଭୟ ଭାଙ୍ଗିବାପାଇଁ ସେମାନଙ୍କୁ ପ୍ରତିଦିନ ମୋ ଆଗରେ କିଛି ସମୟ ଦୌଡ଼ାଇବାର ଆଦେଶ ଦିଆଗଲା ।

ପ୍ରାୟ ତିନି ସପ୍ତାହମଧ୍ୟରେ ମୁଁ ସେ ଦେଶର ଭାଷା ଅନେକ ପରିମାଣରେ ଶିଖିଗଲି । ମଧ୍ୟେ ମଧ୍ୟେ ସ୍ୱୟଂ ମହାରାଜା ମୋତେ ଦେଖା ଦେଉଥିଲେ ଏବଂ ମୋର ଭାଷାଶିକ୍ଷାରେ ସାହାଯ୍ୟ କରୁଥିଲେ ।

ମୁଁ ସେମାନଙ୍କ ଭାଷାରେ କିଛି କିଛି କହିବାକୁ ଶିଖିଲି ମାତ୍ରେ ମହାରାଜାଙ୍କୁ ଜଣାଇଲି ଯେ ମୋତେ ବନ୍ଧନରୁ ମୁକ୍ତ ଦିଆଯାଉ । ତାଙ୍କ ଉତ୍ତରରୁ ମୁଁ ବୁଝିଲି ଯେ ମନ୍ତ୍ରିମଣ୍ଡଳର ପରାମର୍ଶ ବିନା ସେ କିଛି କରିପାରିବେ ନାହିଁ । ପ୍ରଥମତଃ ମୋତେ ପ୍ରତିଜ୍ଞା କରିବାକୁ ହେବ ଯେ ରାଜା ଓ ରାଜ୍ୟର ଅଧିବାସୀଙ୍କପ୍ରତି ଶାନ୍ତିପୂର୍ଣ୍ଣ ବ୍ୟବହାର କରିବି । ତାପରେ ମୋର ମୁକ୍ତି ବିଷୟ ବିଚାର କରାଯିବ । ରାଜାମହୋଦୟ ମୋତେ ଆଶ୍ୱାସନା ଦେଲେ ଯେ ମୋପ୍ରତି ସଦୟ ବ୍ୟବହାର କରାଯିବ । ଧୈର୍ଯ୍ୟ ଓ ଭଦ୍ରବ୍ୟବହାରଦ୍ୱାରା ମହାରାଜା ଓ ତାଙ୍କ ପ୍ରଜାଙ୍କର ଅନୁକୂଳ ମତ ସୃଷ୍ଟି କରିବା ମୋର କର୍ତ୍ତବ୍ୟ ବୋଲି ସେ ମୋତେ ବୁଝାଇଦେଲେ ।

ରାଜାମହୋଦୟ ମୋତେ କହିଲେ, "ତୁମପାଖରେ କୌଣସି ଅସ୍ତ୍ର-ଶସ୍ତ୍ର ଥାଇପାରେ । ତୁମର ଶରୀର ଯେପରି ବୃହତ୍, ସେଗୁଡ଼ିକ ମଧ୍ୟ ସେହିପରି ବୃହତ୍ ହୋଇଥିବ । ଏପ୍ରକାର ଜିନିଷ ବିପଜ୍ଜନକ;

ତେଣୁ ଉପଯୁକ୍ତ କର୍ମଚାରୀମାନେ ତଲାସ କରି ତୁମ ଦେହରେ କଅଣ ଅଛି ଦେଖିବେ । ବୋଧ ହୁଏ ତୁମେ ଏଥିରେ କିଛି ମନେ କରିବ ନାହିଁ ।”

ମୁଁ ପକେଟକୁ ଓଲଟାଇ ସଙ୍ଗେ ସଙ୍ଗେ ଦେଖାଇବାକୁ ଯାଉଥିଲି; କିନ୍ତୁ ରାଜା ମହୋଦୟ କହିଲେ, “ନା, ବର୍ତ୍ତମାନ ନୁହେଁ । ଆମ ଦେଶର ଆଇନ ଅନୁସାରେ ଆମର ଦୁଇ ଜଣ କର୍ମଚାରୀ ତୁମକୁ ଖାନତଲାସ କରିବେ । କିନ୍ତୁ ତୁମର ଏଥିପାଇଁ ସାହାଯ୍ୟ ଦରକାର । ତୁମଠାରୁ ଯାହା ଆମ ସରକାର ଜବତ କରିବେ ସେସବୁ ତୁମ ନିଜ ଦେଶକୁ ଗଲାବେଳେ ନେଇପାରିବ । ଯଦି ସରକାର କିଛି ରଖିବାକୁ ଚାହାନ୍ତି ତେବେ ତୁମେ ଯାହା ମୂଲ୍ୟ ଚାହିଁବ ତାହା ଦିଆଯିବ ।”

ମୋତେ ଖାନତଲାସ କରିବାପାଇଁ ଦୁଇ ଜଣ କର୍ମଚାରୀ ଆସିଲେ । ମୁଁ ସେମାନଙ୍କୁ ମୋର କୋଟ ପକେଟମାନଙ୍କରେ ଗୋଟିକ ପରେ ଗୋଟିଏ ରଖିଦେଲି । ସେମାନେ ମୋର ପକେଟ-ମାନଙ୍କରେ ଯାହା ଦେଖିଲେ ତାହାର ଗୋଟିଏ ବିଶଦ ତାଲିକା ତିଆରି କଲେ । ସେମାନଙ୍କ ତାଲିକା ଲେଖା ସରିବାରୁ ମୁଁ ସେମାନଙ୍କୁ ପକେଟରୁ ଆଣି ଧୀରେ ତଳେ ରଖିଦେଲି । ସେମାନେ ମହାରାଜାଙ୍କ ପାଖେ ଯେଉଁ ତାଲିକା ଦେଇଥିଲେ ତାର ଅନୁବାଦ ଏଠାରେ ଦେଉଛି ।

—୨—

ଧର୍ମାବତାର,

ଶ୍ରୀହଜୁରଙ୍କ ଆଦେଶରେ ଆମ୍ଭେମାନେ ଖାନତଲାସ କରି ଦେଖିଲୁଁ ଯେ ମଣିଷପାହାଡ଼ର ଡାହାଣ ପାଖ କୋଟ ପକେଟରେ ଗୋଟିଏ ପ୍ରକାଣ୍ଡ କପଡ଼ା । ଏହା ଏତେ ବଡ଼ ଓ ଏତେ ମୋଟା ଯେ

ଶ୍ରୀହଜୁରଙ୍କ ସଦର ଘର ମେଜଅଡ଼ପରେ ସତରଞ୍ଜି ପରି ବିଛା-ଯାଇପାରିବ ।

ମଣିଷପାହାଡ଼ର ବାଁ ପକେଟରେ ଗୋଟିଏ ପ୍ରକାଣ୍ଡ ସିନ୍ଦୁକ ଦେଖିଲୁଁ । ତାହା ରୂପାରେ ତିଆରି । ଆମ୍ଭେମାନେ ତାକୁ ଟେକି-ପାରିଲୁଁ ନାହିଁ । ଆମ ଆଦେଶରେ ମଣିଷପାହାଡ଼ ତାକୁ ଖୋଲିଦେଲା । ଆମେ ତାଭିତରେ පଶିଲୁଁ । ସେଥିରେ ଏକପ୍ରକାର ସୂକ୍ଷ୍ମ ଚୂନା ଥିଲା । ଆମେ ଅଣ୍ଟାପର୍ଯ୍ୟନ୍ତ ସେଥିରେ ବୁଡ଼ିଗଲୁଁ । ସେଥିରୁ କିଛି ଉଡ଼ିଆସି ଆମ ମୁହଁରେ ବାଜିବାରୁ ଅନେକ ଥର ଛିଙ୍କ ହେଲା ।

ଡାହାଣ ପାଖ ଓ୍ୱେଷ୍ଟପକେଟରେ ଏକପ୍ରକାର ଧଳା ପତଳା କାଗଜ ଗୁଡ଼ିକ ଭାଙ୍ଗ ହୋଇଥିବାର ଦେଖିଲୁଁ । ତାହା ଗୋଟିଏ ମୋଟ ଦଉଡ଼ିରେ ବନ୍ଧା ହୋଇଥିଲା । ତାଉପରେ କଳା କଳା ଚିହ୍ନ ଅଛି । ଆମର ଅନୁମାନ, ଏ ଚିହ୍ନ ସେ ଦେଶର ଲେଖା । ପ୍ରତି ଅକ୍ଷର ଗୋଟିଏ ଲେଖାଏଁ ହାତଠାରୁ ବଡ଼ ହେବ ।

ବାଁ ପାଖ ଓ୍ୱେଷ୍ଟପକେଟରେ ଏକପ୍ରକାର ଯନ୍ତ୍ର ଦେଖିବାକୁ ପାଇଲୁଁ । ଏହାର ଗୋଟିଏ ପାଖରୁ ୨୦ଟି ଖମ୍ବ ପରି ପଦାର୍ଥ ବାହାରିଛି । ଶ୍ରୀହଜୁରଙ୍କ ପ୍ରାସାଦ ଆଗରେ ଥିବା ଖମ୍ବ ସଙ୍ଗେ ଏହା ସମାନ ଲମ୍ବ ହେବ । ଏଥିରେ ସେ ମୁଣ୍ଡ କୁଣ୍ଡାଏ ବୋଲି ଶୁଣିଲୁଁ ।

ଡାହାଣ ପାଖର ଗୋଟିଏ ବଡ଼ ପକେଟରେ ଆମ୍ଭେମାନେ ଗୋଟିଏ ବଡ଼ ଲୁହା ଖମ୍ବ ପରି ପଦାର୍ଥ ଦେଖିଲୁଁ । ଏହାର ଉପରିଟି ଫମ୍ପା । ଏହା ଜଣେ ମଣିଷର ଉଚ୍ଚତା ସଙ୍ଗେ ସମାନ ହେବ । ଏହାର ଗୋଟିଏ ପାଖରୁ ବଡ଼ ବଡ଼ ଲୁହାଖଣ୍ଡମାନ ବାହାରି-ପଡ଼ିଛି । ଏଥିରେ ବିଚିତ୍ର ଚିହ୍ନମାନ ଅଛି । ଏହା କଅଣ, ଆମେ ସ୍ଥିର କରିପାରିଲୁଁ ନାହିଁ ।

ବାଁ ପକେଟରେ ଠିକ୍ ନେସନ୍ପର ଅଜ ଗୋଟିଏ ପଦାର୍ଥ ଦେଖିଲୁଁ । ଗୋଟିଏ ଛୋଟ ପକେଟରୁ ଅନେକଗୁଡ଼ିଏ ଚେପ୍ଟା ଓ ଗୋଲାକାର ଧାତୁନିର୍ମିତ ପଦାର୍ଥ ମିଳିଲା । ସେଥିମଧ୍ୟରୁ କେତେକ ଧଳା ଓ କେତେକ ରକ୍ତିମ । ଏଗୁଡ଼ିକର ଆକାର ଭିନ୍ନ ଭିନ୍ନ । ଧଳାଗୁଡ଼ିକ ରୁପାର ବୋଲି ଅନୁମାନ ହୁଏ । ଏଗୁଡ଼ିକ ଏତେ ଓଜନ ଯେ ଆମେ ଦୁହେଁ ମିଳି ଗୋଟିକୁ ସୁଦ୍ଧା ଟେକିପାରିଲୁଁ ନାହିଁ ।

ବାଁ ପାଖର ଗୋଟିଏ ପକେଟରୁ ଦୁଇଟି କଳା ରଙ୍ଗର ଖମ୍ବ ପରି ପଦାର୍ଥ ଦେଖିଲୁଁ । ବହୁ କଷ୍ଟରେ ଅମ୍ଭେମାନେ ତାହାର ଅଗକୁ ହାତ ବଢ଼ାଇଲୁଁ । ସେଥିମଧ୍ୟରୁ ଗୋଟିକର ଅଗରେ ଧଳା ରଙ୍ଗର କୌଣସି ଗୋଲ ପଦାର୍ଥ ଥିଲା । ସେହି ଅଂଶଟି ଗୋଟିଏ ମନୁଷ୍ୟମୁଣ୍ଡର ଦୁଇ ଗୁଣ ହେବ । ପ୍ରତ୍ୟେକରେ ଗୋଟିଏ ଲେଖାଏଁ ପ୍ରକାଣ୍ଡ ହତିଆର ଥିଲା । ଆମ ଆଦେଶରେ ମଣିଷପାହାଡ଼ ତାକୁ ଖୋଲି ଆମକୁ ଦେଖାଇଲା । ତାହାଠାରୁ ବୁଝିଲୁଁ ଯେ ତା ରାଜ୍ୟର ଲୋକେ ଗୋଟିକ ସାହାଯ୍ୟରେ କ୍ଷୌର ହୁଅନ୍ତି ଓ ଅନ୍ୟଟିରେ ଖାଇବାବେଳେ ମାଂସ କଟାଯାଏ ।

ଏହାଛଡ଼ା ତାର ପୋଷାକରେ ଦୁଇଟି ଛୋଟ ପକେଟ ଅଛି । ଆମେ ସେଥିରେ ପଶିପାରିଲୁଁ ନାହିଁ । ଗୋଟିକରୁ ରୁପାର ପ୍ରକାଣ୍ଡ ଶିକୁଳିଟିଏ ଝୁଲିଥିବାର ଦେଖିଲୁଁ । ତା ସଙ୍ଗେ ଗୋଟିଏ ପ୍ରକାର ଗୋଲାକାର ଯନ୍ତ୍ର ବନ୍ଧା ହୋଇଛି । ଆମ ଆଦେଶରେ ସେ ଏହି ଯନ୍ତ୍ରଟିକୁ ବାହାର କରି ଦେଖାଇଲା । ଏହା ଅଧେ ରୁପାରେ ଓ ଆଉ ଅଧକ ଏକପ୍ରକାର ସ୍ୱଚ୍ଛ ପଦାର୍ଥରେ ତିଆରି । ସ୍ୱଚ୍ଛ ପାଖରେ କେତେଗୁଡ଼ିଏ ଅଙ୍କ ଲେଖାହୋଇଛି । ସେ ଯନ୍ତ୍ରଟିକୁ ଆମ କାନ ପାଖରେ ଧରିଲା । ସେଥିରୁ କାରଖାନାର ଶବ୍ଦପରି ଶବ୍ଦ ବାହାରୁଥିଲା । ଅମ୍ଭମାନଙ୍କ ମତରେ ଏହା କୌଣସି ଜୀବ ହୋଇପାରେ କିମ୍ବା କୌଣସି

ଦେବତା ହୋଇପାରେ । ଦେବତା ହେବା ବେଶୀ ସମ୍ଭବ । କାରଣ ସେ କହୁଛି ଯେ ଏହାକୁ ନ ଦେଖିଲେ ସେ କୌଣସି କାମ କରେ ନାହିଁ ।

ଅନ୍ୟ ପ୍ଲେଟ ପକେଟରୁ ସେ ଗୋଟିଏ ଜାଲ ବାହାର କଲା । ଏଇଟି ଏପରି ତିଆରି ଯେ ଏହାକୁ ସହଜେ ଖୋଲି ହେବ ବା ବନ୍ଦ କରି ହେବ । ଏହାକୁ ସେ ଥଳୀରୂପେ ବ୍ୟବହାର କରେ । ଏଥିରୁ କେତେକ ହଳଦିଆ ଧାତୁର ଜିନିଷ ବାହାରିଲା । ଏଗୁଡ଼ିକ ଯଦି ପ୍ରକୃତରେ ସୁନାର ହୋଇଥାଏ, ତେବେ ଏଗୁଡ଼ିକର ମୂଲ୍ୟ ବହୁତ ହେବ ।

ଶ୍ରୀହଜୁରଙ୍କ ଆଦେଶ ଅନୁସାରେ ଆମ୍ଭେମାନେ ଯଥାସାଧ୍ୟ ତାର ସମସ୍ତ ପକେଟ ଖାନତଲାସ କରି ତାର ଅଣ୍ଟାରେ ଥିବା କମରପଟିକୁ ଦେଖିଲୁଁ । ଏହା କୌଣସି ପ୍ରକାଣ୍ଡ ଜୀବର ଚମଡ଼ାରେ ତିଆରି । ଏହାର ବାଁ ପାଖରୁ ଗୋଟିଏ ଖଣ୍ଡା ଝୁଲୁଥିଲା । ଖଣ୍ଡାଟିର ଲମ୍ବ ପାଞ୍ଚ ଜଣ ମଣିଷର ଉଚ୍ଚତା ସଙ୍ଗେ ସମାନ ହେବ । ଡାହାଣ ପାଖରେ ଗୋଟିଏ ଥଳୀ ଥିଲା । ଥଳୀଟି ଦୁଇ ଭାଗରେ ବିଭକ୍ତ । ପ୍ରତ୍ୟେକରେ ତିନି ଜଣ ମନୁଷ୍ୟ ରହିପାରିବେ ।

ଗୋଟିଏ ଅଂଶରେ ଗୁଡ଼ିଏ ଧାତୁନିର୍ମିତ ପେଣ୍ଡୁ ଅଛି । ପ୍ରତି ପେଣ୍ଡୁ ଗୋଟିଏ ମନୁଷ୍ୟମୁଣ୍ଡ ପରି ହେବ । ଅନ୍ୟ ଅଂଶରେ ଏକପ୍ରକାର କଳା ବାଲିପରି ପଦାର୍ଥ ଅଛି । ଆମ୍ଭେମାନେ ହାତରେ ପଚାଶଟା ଯାଏ ସେଥିରୁ ଧରିପାରିଲୁଁ । ଏହା ଖୁବ୍ ହାଲୁକା ପଦାର୍ଥ ପରି ଜଣାଗଲା ।

ମଣିଷପାହାଡ଼-ଦେହରେ ଆମ୍ଭେମାନେ ଯାହା ଦେଖିଲୁଁ ତାର ତାଲିକା ଏଠାରେ ଦେଲୁଁ । ଶ୍ରୀହଜୁରଙ୍କ ଆଦେଶପ୍ରତି ଉପଯୁକ୍ତ ସମ୍ମାନ ଦେଖାଇ ସେ ଆମ୍ଭମାନଙ୍କ ପ୍ରତି ଭଦ୍ରବ୍ୟବହାର କରିଅଛି ।

ଶ୍ରୀ ହଜୂରଙ୍କ ଖଜାଞ୍ଚିର ୮୯ଣ ମାସର ୪ର୍ଥ ଦିନରେ ସ୍ୱାକ୍ଷର ଓ ମୋହର ସହ ଏହି ତାଲିକା ଦାଖଲ କରାଗଲା ।

ସ୍ୱାକ୍ଷର

ମହାରାଜା ତାଲିକାଟି ଶୁଣି ଜିନଷଗୁଡ଼ିକ ଦେଇ ପକାଇବାକୁ ମୋତେ ଆଦେଶ ଦେଲେ । ପ୍ରଥମେ ଖଣ୍ଡାଟି ଖୋଳ ସହିତ ରଖିଦେଲି । ସେ ମୋତେ ଖୋଳରୁ ଖଣ୍ଡାଟି ବାହାର କରିବାକୁ କହିଲେ । ମୁଁ ଖଣ୍ଡା ବାହାର କଲାକ୍ଷଣି ସେଥିରେ ଖରା ପଡ଼ି ଚକ୍‌ଚକ୍‌ ଦିଶିଲା । ରାଜାଙ୍କର ସୈନ୍ୟମାନେ ଏହାକୁ ଦେଖି ଭୟ ଓ ବିସ୍ମୟରେ ଚିତ୍କାର କରିଉଠିଲେ ।

ମହାରାଜା ସେତେ ଭୟ କରିବାର ଜଣାଗଲା ନାହିଁ । ତାଙ୍କ ଆଦେଶରେ ମୁଁ ଖଣ୍ଡାଟିକୁ ଖୋପରେ ଭର୍ତ୍ତି କରି ମୋଠାରୁ କିଛି ଦୂରରେ ରଖିଦେଲି ।

ତାପରେ ସେ ମୋର ପିସ୍ତଲଟିକୁ ଗୁହିଁଲେ । ମୁଁ ପିସ୍ତଲ ବାହାର କରି ତାର ବ୍ୟବହାର କଅଣ ବୁଝାଇଦେଲି । ସେଥିରେ କିଛି ବାରୁଦ ଭର୍ତ୍ତି କରି ମୁଁ ରାଜାଙ୍କୁ ଭୟ ନ କରିବାକୁ ସାବଧାନ କରିଦେଲି । ତାପରେ ଆକାଶ ଆଡ଼କୁ ପିସ୍ତଲ ଫୁଟାଇଲି ।

ସମସ୍ତେ ବଡ଼ ବିସ୍ମିତ ହେଲେ । ଶହ ଶହ ଲୋକ ମଲାପରି ତଳେ ପଡ଼ିଗଲେ । ସ୍ୱୟଂ ମହାରାଜା ଏତେ ସାହସୀ ହେଲେ ମଧ୍ୟ କିଛି ବେଳଯାଏ ସ୍ତମ୍ଭୀଭୂତ ହୋଇ ରହିଗଲେ । ମୁଁ ପିସ୍ତଲ ଦୁଇଟି, ବାରୁଦ ଥଳି, ଗୁଳି, ଏସବୁ ରଖିଦେଇ ଜଣାଇଦେଲି ଯେ ବାରୁଦକୁ ନିଆଁଠାରୁ ଖୁବ୍‌ ଦୂରରେ ସାବଧାନରେ ରଖିବାକୁ ହେବ ।

ତାପରେ ମୋ ଘଣ୍ଟାଟି ବାହାର କରିଦେଲି । ଏହାକୁ ଦେଖି ରାଜା ବଡ଼ ଆଶ୍ଚର୍ଯ୍ୟ ହେଲେ । ଏହାର ଶବ୍ଦ ଶୁଣି ସେ ବିସ୍ମିତ ହେଲେ । ତାଙ୍କର ଦୃଷ୍ଟିଶକ୍ତି ଆମ୍ଭମାନଙ୍କ ଦୃଷ୍ଟିଶକ୍ତିଠାରୁ ପ୍ରଖର ହୋଇଥିବାରୁ ଅଳ୍ପ ସମୟମଧ୍ୟରେ ସେ ମିନିଟକଣ୍ଟା ଘୁରୁଥିବାର ଲକ୍ଷ୍ୟ କରିପାରିଥିଲେ ।

ମୋଠାରେ ଥିବା ଟଙ୍କାପଇସା, ମୋ କ୍ଷୁର, ଛୁରୀ, ପାନିଆଁ, ରୁପା ନାସ-ଦାନି, ମୋ ରୁମାଲ ଓ ନୋଟବହିସବୁ ଗୋଟିକ ପରେ ଗୋଟିଏ କାଢ଼ି ରଖିଦେଲି । ମୋର ଖଣ୍ଡା, ପିସ୍ତଲ ଓ ଥଳି ଗାଡ଼ିମାନଙ୍କରେ ଲଦା ହୋଇ ସରକାରୀ ମାଲଗୋଦାମକୁ ପଠାଗଲା । ଅନ୍ୟ ଜିନିଷଗୁଡ଼ିକ ମୋତେ ଫେରାଇ ଦିଆଗଲା ।

ମୋର ଗୋଟିଏ ଗୁପ୍ତପକେଟ ଥିଲା । ସେଇଟିକୁ କର୍ମଚାରୀ ବୁହେଁ ତଲାସ କରି ନ ଥିଲେ । ସେଥିରେ ମୋର ଚଷମା, ଗୋଟିଏ ଛୋଟ ଦୂରବୀକ୍ଷଣ ଯନ୍ତ୍ର ଓ ଆଉ କେତେକ ଦରକାରୀ ଜିନିଷ ଥିଲା ।

— ୮ —

କ୍ରମେ ଲିଲିପୁଟ(ସେଇ ଦେଶର ନାମ ଲିଲିପୁଟ)ର ଲୋକେ ମୋତେ ଆଉ ପୂର୍ବପରି ଭୟ କଲେ ନାହିଁ । ବେଳେ ବେଳେ ମୁଁ ଚାରି ପାଞ୍ଚ ଜଣଙ୍କୁ ହାତରେ ଛିଡ଼ା କରାଇଦିଏ । ସେମାନେ ମୋ ହାତଉପରେ ନାଚନ୍ତି । ବେଳକୁ ଛୋଟ ପୁଅଝିଅମାନେ ମଧ୍ୟ ମୋ ବାଳରେ ପଶି ଲୁଚକାଳି ଖେଳନ୍ତି ।

ଏଥିମଧ୍ୟରେ ମୁଁ ସେମାନଙ୍କର ଭାଷା ଭଲରୂପେ ଶିଖିଗଲି ।

ଦିନେ ମହାରାଜା ଅନୁଗ୍ରହ କରି ତାଙ୍କ ଦେଶର ଖେଳ କସରତ ଦେଖାଇଥିଲେ । ଦୁଇ ଫୁଟ ଦୂରରେ ପ୍ରାୟ ଫୁଟେ ଲେଖାଏଁ

ଭଳ ଦୁଇଟି ଖମ୍ବ ପୋତା ହେଲା । ଖମ୍ବ ଦୁଇଟିରେ ଗୋଟିଏ ସରୁ ସୂତା ବନ୍ଧା ହୋଇଥିଲା । ଏହି ସୂତାଉପରେ ଜଣେ ଲୋକ ନାଚି ନାଚି ଚାଲିଗଲା । ଏଇ ଖେଳଟି ମୋତେ ସବୁଠାରୁ ଭଲ ଲାଗିଲା ।

ଶୁଣିଲି ଯେ ଯେଉଁମାନେ ରାଜସରକାରରେ ବଡ଼ ଚାକିରିର ଆଶା ରଖିଥାନ୍ତି, ସେମାନେ ଏହିପ୍ରକାର କୌଶଳ ଶିକ୍ଷା କରିଥାନ୍ତି । କୌଣସି ବଡ଼ ଚାକିରି ଖାଲି ହେଲେ ପ୍ରାର୍ଥୀମାନେ ମହାରାଜା ଓ ତାଙ୍କ ପାରିଷଦଙ୍କ ଆଗରେ ଏହି କୌଶଳ ଦେଖାନ୍ତି । ଯେ ଏଥିରେ ସବୁଠାରୁ ବେଶୀ କୃତିତ୍ୱ ଦେଖାଇପାରେ, ତାକୁ ଚାକିରିରେ ନିଯୁକ୍ତ କରାଯାଏ ।

ସମୟ ସମୟରେ ପ୍ରଧାନମନ୍ତ୍ରୀମାନଙ୍କୁ ମହାରାଜାଙ୍କ ସାମ୍ନାରେ ଏହି ସୂତାଉପରେ ଡେଇଁବା କୌଶଳ ଦେଖାଇବାକୁ ପଡ଼େ । ଏଥିରେ କୃତିତ୍ୱ ଦେଖାଇ ନ ପାରିଲେ ଜଣାଯାଏ ଯେ ତାଙ୍କର ଯୋଗ୍ୟତା କମିଯାଇଛି । ରାଜ୍ୟର କୋଷାଧ୍ୟକ୍ଷ ଏ ବିଦ୍ୟାରେ ସବୁଠାରୁ ବେଶୀ ନିପୁଣ । ମୁଁ କେତେ ଥର ତାଙ୍କ କୃତିତ୍ୱ ଦେଖିବାର ସୁଯୋଗ ପାଇଥିଲି ।

ଏହି ପ୍ରତିଯୋଗିତା ଓ ପରୀକ୍ଷାରେ ବେଳେ ବେଳେ ଦୁର୍ଘଟଣା ମଧ୍ୟ ଘଟିଥାଏ । ଦୁଇ ଜଣ ପ୍ରାର୍ଥୀ କୃତିତ୍ୱ ଦେଖାଉ ଦେଖାଉ ଆହତ ହୋଇଥିବାର ମୁଁ ନିଜେ ଦେଖିଛି । ମନ୍ତ୍ରୀମାନଙ୍କର କୌଶଳ ପ୍ରଦର୍ଶନ ବେଳେ ବେଶୀ ଦୁର୍ଘଟଣା ଘଟେ । ପ୍ରତ୍ୟେକ ମନ୍ତ୍ରୀ ନିଜକୁ ଅଧିକ ଯୋଗ୍ୟ ବୋଲି ପ୍ରମାଣିତ କରିବାକୁ ପ୍ରାଣପଣେ ଚେଷ୍ଟା କରନ୍ତି । ଫଳରେ ଅନେକେ ପଡ଼ିଯାଇ ଆଘାତ ପାଆନ୍ତି ।

ଏହାଛଡ଼ା ସେ ଦେଶରେ ଅନ୍ୟ ଏକପ୍ରକାର ଆମୋଦ ଅଛି । ଏହା କେବଳ ମହାରାଜା, ମହାରାଣୀ ଓ ପ୍ରଧାନମନ୍ତ୍ରୀଙ୍କ ଆଗରେ ପ୍ରଦର୍ଶିତ ହୁଏ । ମହାରାଜା ଟେବୁଲଉପରେ ପ୍ରାୟ ଛଅ ଇଞ୍ଚ ଲମ୍ବର

ତନିଟି ରେଶମ ସୂତା ରଖନ୍ତି । ସେଥିରୁ ଗୋଟିଏ ନୀଳ ରଙ୍ଗର, ଗୋଟିଏ ଲାଲ୍ ରଙ୍ଗର ଓ ଅନ୍ୟଟି ସବୁଜ ରଙ୍ଗର । ଏଗୁଡ଼ିକ ମହାରାଜାଙ୍କ ଅନୁଗ୍ରହର ଚିହ୍ନରୂପେ ପୁରସ୍କାର ଦିଆଯାଏ ।

ମହାରାଜାଙ୍କ ଦରବାର ଘରେ ଏହି ଉତ୍ସବ ଅନୁଷ୍ଠିତ ହୁଏ। ମହାରାଜା ଦୁଇ ହାତରେ ଖଣ୍ଡିଏ ବାଡ଼ିକୁ ଭୂଇଁ ସହିତ ସମାନ୍ତର କରି ଧରନ୍ତି । ପ୍ରାର୍ଥୀମାନେ ଜଣକ ପରେ ଜଣେ ସେହି ବାଡ଼ି-ଉପରେ ଡିଅନ୍ତି । ମହାରାଜା ଇଚ୍ଛା ଅନୁସାରେ ବାଡ଼ି ଉପରକୁ ବା ତଳକୁ ରଖିଥାନ୍ତି । କେତେବେଳେ ପଛଅଡ଼ିଆ ମଧ୍ୟ ଡେଇଁବାକୁ ହୁଏ । କେବେ କେବେ ବାଡ଼ିର ଗୋଟିଏ ମୁଣ୍ଡ ମହାରାଜା ଧରନ୍ତି ଓ ଆର ମୁଣ୍ଡଟି ପ୍ରଧାନମନ୍ତ୍ରୀ ଧରନ୍ତି । ପୁଣି କେତେବେଳେ ପ୍ରଧାନମନ୍ତ୍ରୀ ବାଡ଼ିର ଦୁଇ ମୁଣ୍ଡଯାକ ଧରନ୍ତି ।

ଯେଉଁ ପ୍ରାର୍ଥୀ ସବୁଠାରୁ ବେଶି ଦକ୍ଷତା ସହକାରେ ବାଡ଼ି-ଉପରେ ଡେଇଁପାରେ, ସେ ନେଳୀ ସୂତା ପୁରସ୍କାର ପାଏ । ତାଠାରୁ ଯେ କମ୍, ତାକୁ ଲାଲ ଓ ତୃତୀୟକୁ ସବୁଜ ସୂତା ପୁରସ୍କାର ଦିଆହୁଏ । ସେମାନେ ଏହି ସୂତାକୁ ଅଣ୍ଟାରେ ଦୁଇଥର ଗୁଡ଼ାଇ ପିନ୍ଧନ୍ତି । ରାଜସରକାରର ସବୁ ବଡ଼ଲୋକ ଏହିପରି କୌଣସି ନା କୌଣସି ପୁରସ୍କାର ପାଇଥିବାର ଦେଖାଯାଏ ।

ସୈନ୍ୟବାହିନୀର ଓ ରାଜବାଟୀର ଘୋଡ଼ାମାନେ ପ୍ରତିଦିନ ମୋ ଆଗରେ ଦଉଡ଼ିବା ଅଭ୍ୟାସ କରୁଥିବାରୁ କ୍ରମେ ସେମାନଙ୍କର ମୋପ୍ରତି ଭୟ ଭାଙ୍ଗିଗଲା । ମୋତେ ଦେଖି ସେମାନେ ଆଉ ଚମକିଲେ ନାହିଁ । ମୁଁ ତଳେ ହାତକୁ ରଖିଲେ ସବାରମାନେ ତାଉପରେ ଘୋଡ଼ାକୁ ଡିଆଇଁ ନିଅନ୍ତି । ଥରେ ଜଣେ ସବାର ମୋର ଜୋତା ସହିତ ପାଦଉପରେ ଘୋଡ଼ାକୁ ଡିଆଇଁ ଦେଇଥିଲା । ଏହାକୁ ସମସ୍ତେ ଆଶ୍ଚର୍ଯ୍ୟ ମନେ କରିଥିଲେ । ଥରେ ଏକପ୍ରକାର

ଖେଳ ଦେଖାଇ ମହାରାଜାଙ୍କୁ ସନ୍ତୁଷ୍ଟ କରିବାର ସୁଯୋଗ ପାଇଥିଲି ।

ମୁଁ ମହାରାଜାଙ୍କ ଲମ୍ବ ଅଙ୍ଗୁଠି ମୋଟ ପ୍ରାୟ ଦୁଇ ଫୁଟ ଉଚ୍ଚର ଗୁଡ଼ିଏ କାଠି ଅଣାଇଲି । ଅବଶ୍ୟ ଏଗୁଡ଼ିକ ଆଣିବାପାଇଁ ଅନେକ ଗାଡ଼ି ଓ ବହୁତ ଲୋକ ନିଯୁକ୍ତ ହୋଇଥିଲେ । ମୁଁ ନଅଟି କାଠି ନେଇ ସେଗୁଡ଼ିକୁ ବର୍ଗାକାରରେ ଦୃଢ଼ କରି ଭୂମିରେ ପୋତି-ଦେଲି । ତାପରେ ମୋର ରୁମାଲଟି ଗୃହ ଉପରେ ବାନ୍ଧିଦେଲି ।

ଏହାପରେ ଚବିଶଟି ଘୋଡ଼ା ଏହି ଗୃହ ଉପରେ ଦଉଡ଼ା-ଦଉଡ଼ି କରାଇବାପାଇଁ ମୁଁ ରାଜାଙ୍କୁ ଅନୁରୋଧ କଲି । ରାଜାଙ୍କ ଅନୁମତି ମିଳିବାରୁ ମୁଁ ଅଶ୍ୱାରୋହୀ ସଶସ୍ତ୍ର ସୈନିକମାନଙ୍କୁ ଗୋଟି ଗୋଟି କରି ଟେକିନେଇ ଗୃହ ଉପରେ ରଖିଦେଲି । କେତେ ଜଣ ସୈନ୍ୟ ବାହିନୀର କର୍ମଚାରୀଙ୍କୁ ମଧ୍ୟ ସେହିପରି ଉପରକୁ ନିଅାଗଲା । ଗୃହ ଉପରେ ସେମାନେ ଦୁଇ ଦଳରେ ବିଭକ୍ତ ହୋଇ କୃତ୍ରିମ ଯୁଦ୍ଧ କଲେ । ଚାରିପାଖେ କାଠିରେ ବାଡ଼ ଦିଆଯାଇଥିବାରୁ ତାହାର ପଡ଼ିଯିବାର ଭୟ ନ ଥିଲା । ଏହି କ୍ରୀଡ଼ା ଦେଖି ମହାରାଜା ଏତେ ସନ୍ତୁଷ୍ଟ ହୋଇଯାଇଥିଲେ ଯେ ଅନେକ ଥର ଏହା ପ୍ରଦର୍ଶିତ ହୋଇଥିଲା । ଏପରିକି ଥରେ ଥରେ ସ୍ୱୟଂ ମହାରାଜା ସୈନ୍ୟ ଚାଳନା କରିଥିଲେ । ମୁଁ ସେମାନଙ୍କର ଯୁଦ୍ଧକୌଶଳ ଓ ଶୃଙ୍ଖଳା ଦେଖି ବିସ୍ମିତ ହୋଇଯାଇଥିଲି ।

ସୌଭାଗ୍ୟବଶତଃ ଏହି କ୍ରୀଡ଼ାରେ କୌଣସି ଦୁର୍ଘଟଣା ଘଟି ନ ଥିଲା । ମାତ୍ର ଥରେ ଗୋଟିଏ ଘୋଡ଼ା ଖୁବ୍ ବେଗରେ ଦଉଡ଼ୁଥିବାବେଳେ ତାର ପାଦରେ ରୁମାଲଟି ଫଟା ହୋଇଗଲା । ଘୋଡ଼ାର ଗୋଡ଼ ସେଥିରେ ଗଳିପଡ଼ିଲା ଓ ତାର ଅରୋହୀ ରୁମାଲ-ଉପରେ ପଡ଼ିଗଲା । କିନ୍ତୁ ମୁଁ ସଙ୍ଗେ ସଙ୍ଗେ ଉଭୟଙ୍କୁ ଏ ବିପଦରୁ

ରକ୍ଷା କରି ପାରିଥିଲି । ପରେ ମୁଁ ରୁମାଲଟିକୁ କୌଣସିମତେ ମରାମତ କରିଦେଲି; କିନ୍ତୁ ତାଉପରେ ଏପରି କୃତ୍ରିମ ଯୁଦ୍ଧ କରାଇବାକୁ ଆଉ ମୋର ସାହସ ହୋଇ ନ ଥିଲା ।

— ୯ —

ଦିନେ ମୁଁ ମହାରାଜାଙ୍କୁ ମୋ ରୁମାଲଉପରେ କୃତ୍ରିମ ଯୁଦ୍ଧ ଦେଖାଉଥିଲି । ଏହି ସମୟରେ ଜଣେ ରାଜକର୍ମଚାରୀ ଆସି ମହାରାଜାଙ୍କୁ ଜଣାଇଲା ଯେ କେତେ ଜଣ ସାଧାରଣ ଲୋକ ସମୁଦ୍ର ନିକଟରେ ଘୋଡ଼ାରେ ଯାଉ ଯାଉ ଗୋଟିଏ ବିଶାଳ କଳା ପଦାର୍ଥ ଦେଖିଅଛନ୍ତି । ଏହାର ଆକାର ବିଚିତ୍ର । ଏହାର ତଳଟି ମହାରାଜାଙ୍କ ଶୋଇବା ଘର ପରି ହେବ । ଉଚ୍ଚତାରେ ଏହା ଦୁଇ ପୁରୁଷରୁ କମ୍ ହେବ ନାହିଁ । ସେମାନେ ସାହସ କରି ଏହାର ଚାରିପାଖେ ବୁଲି ଦେଖିଲେ ଯେ ଏହା ହଲଚଲ ହେଉ ନାହିଁ । ତେଣୁ ଏହା କୌଣସି ଜୀବ ନୁହେଁ । ଜଣେ ଆଉ ଜଣକ କାନ୍ଧ-ଉପରେ ଚଢ଼ି ତାଉପରକୁ ଯାଇ ଦେଖିଲା ଯେ ଏହାର ଉପରଭାଗ ପ୍ରାୟ ସମତଳ । ଗୋଇଠା ମାରିବାରୁ ଜଣାଗଲା, ତା ଭିତରଟା ଫମ୍ପା । ସେମାନଙ୍କର ଅନୁମାନ ଯେ, ଏଇଟି ସେହି ମଣିଷପାହାଡ଼ର ବ୍ୟବହାରରେ ଲାଗୁଥିବ ।

ଏକଥା ଶୁଣିଲାମାତ୍ରେ ମୁଁ ଜାଣିପାରିଲି ଯେ ସେ ଜିନିଷଟି ମୋର ଟୋପିଛଡ଼ା ଆଉ କିଛି ନୁହେଁ । ମୁଁ ଯେଉଁ ଦିନ କୂଳରେ ଲାଗିଲି, ସେଦିନ ମୁଣ୍ଡରୁ କେତେବେଳେ ଟୋପିଟି ଖସିପଡ଼ିଥିଲା । ମୁଁ ଭାବିଥିଲି ଯେ ଟୋପିଟି ସମୁଦ୍ରରେ ଯାଇଛି । ଏବେ ସେ ଟୋପିଟି ମିଳିଥିବାର ଶୁଣି ଅତ୍ୟନ୍ତ ଆନନ୍ଦିତ ହେଲି ।

ଟୋପିଟି ଅଣାଇଦେବାପାଇଁ ମୁଁ ମହାରାଜାଙ୍କୁ ପ୍ରାର୍ଥନା କଲି । ମୋର ପ୍ରାର୍ଥନା ମଞ୍ଜୁର ହୋଇଗଲା । ତା ପରଦିନ ଟୋପିଟି ଆସି ପହଞ୍ଚିଲା ସତ; କିନ୍ତୁ ତାର ଧାରରେ କୁଇଁଚା କଣା ହୋଇଥିଲା ଓ କେତେକ ଅଂଶ ଛିଡ଼ି ଯାଇଥିଲା । ଶୁଣିପାରିଲି ଯେ ଲୋକେ ଦୁଇଟି କଣା କରି ସେଥିରେ ମୋଟ ଦଉଡ଼ି ପୂରାଇ ବାନ୍ଧି ଘୋଡ଼ାମାନଙ୍କଦ୍ୱାରା ଟାଣାଇ ଟାଣାଇ ତାହାକୁ ଆଣିଥିଲେ । ଯାହା ହେଉ ସେ ଦେଶର ଭୂଇଁ ସମତଳ ଓ ନରମ ହୋଇଥିବାରୁ ଟୋପିର ବିଶେଷ କିଛି କ୍ଷତି ହୋଇ ନ ଥିଲା ।



ଥରେ ମହାରାଜାଙ୍କ ଆଦେଶରେ ଗୋଟିଏ ନୂଆ ଆମୋଦର ବ୍ୟବସ୍ଥା ହୋଇଥିଲା । ମୁଁ ଦୁଇ ଗୋଡ଼କୁ ମେଲାଇ ଠିଆ ହେଲି । ସେନାପତି ତାଙ୍କର ସୈନ୍ୟମାନଙ୍କୁ ମୋ ଦୁଇ ଗୋଡ଼ ମଝିରେ ଯିବାକୁ ଆଦେଶ ଦେଲେ । ପ୍ରଥମେ ୨୪ ଧାଡ଼ି ପଦାତିକ ଓ ତାପରେ ଷୋଳ ଧାଡ଼ି ଅଶ୍ୱାରୋହୀ ବାଦ୍ୟ ବଜାଇ ପତାକା ଉଡ଼ାଇ ଖୁବ୍

ଅଡ଼ମ୍ବରରେ ମୋ ଦୁଇ ଗୋଡ଼ ମଝିରେ ଗୁଳିଲେ । ଏହି ଆମୋଦରେ ଉଚ୍ଚ କର୍ମଚାରୀଙ୍କ ଛଡ଼ା ତିନି ହଜାର ପଦାତିକ ଓ ଏକ ହଜାର ଅଶ୍ୱାରୋହୀ ଯୋଗ ଦେଇଥିଲେ ।

ଏଥିମଧ୍ୟରେ ମୋତେ ବନ୍ଧନରୁ ମୁକ୍ତ ଦେବାପାଇଁ ଅନେକ ଥର ନିବେଦନ କରିଥିଲି । ମହାରାଜା ଶେଷରେ ମୋ ପ୍ରାର୍ଥନା ବିଷୟ ମନ୍ତ୍ରିମଣ୍ଡଳରେ ପକାଇଲେ ଓ ତାପରେ ପରିଷଦରେ ପକାଇଲେ । ସମସ୍ତେ ମୋ ପ୍ରାର୍ଥନା ମଞ୍ଜୁର କରିବାକୁ ମତ ଦେଲେ; କିନ୍ତୁ ବୋଲଗୋଲମ ବୋଲି ଜଣେ ସଭ୍ୟ ଏଥିରେ ଘୋର ଆପତ୍ତି କଲେ । ସେ ଯେ ତାହାଙ୍କ ମୋର ଏପରି ଭୀଷଣ ଶତ୍ରୁ ହୋଇ ପଡ଼ିଥିଲେ, ମୁଁ ଜାଣି ନ ଥିଲି ।

ଯାହା ହେଉ ଏହି ଆପତ୍ତି ସତ୍ତ୍ୱେ ସଭ୍ୟମାନେ ମୋତେ ମୁକ୍ତ ଦେବାକୁ ମତ ଦେଲେ । ମହାରାଜା ମଧ୍ୟ ଏ ପ୍ରସ୍ତାବକୁ ମଞ୍ଜୁର କଲେ । ଏହି ବିରୋଧୀ ମନ୍ତ୍ରୀ ରାଜ୍ୟର ପ୍ରଧାନ ନୌସେନାପତି ଥିଲେ । ମହାରାଜା ତାଙ୍କ ଯୋଗ୍ୟତା ଓ ବୁଦ୍ଧି ବିଚାର ବିଷୟରେ ନିଃସନ୍ଦେହ ଥିଲେ । କି କି ସର୍ତ୍ତରେ ମୋତେ ମୁକ୍ତ ଦିଆଯିବ, ତାହା ଏହି ମନ୍ତ୍ରୀଙ୍କ ହାତରେ ଛାଡ଼ିଦିଆଗଲା ।

ସ୍ୱୟଂ ମନ୍ତ୍ରୀ ବୋଲଗୋଲମ ସର୍ତ୍ତଗୁଡ଼ିକ ଲେଖି ଦୁଇ ଜଣ ରାଜକର୍ମଚାରୀଙ୍କ ସହିତ ମୋ ପାଖକୁ ଆସିଲେ । ସେଗୁଡ଼ିକ ପଢ଼ି ମୋତେ ଶୁଣାଇଦେଇ କହିଲେ ଯେ ଏହି ସର୍ତ୍ତଗୁଡ଼ିକ ପାଳନ କରିବାକୁ ମୋତେ ଆମ ଦେଶ ରୀତି ଅନୁସାରେ ଓ ତପରେ ଲିଲିପୁଟର ଆଇନ ଅନୁସାରେ ଶପଥ କରିବାକୁ ପଡ଼ିବ । ମୁଁ ଏଥିରେ ସ୍ୱୀକୃତ ହେଲି ।

ସର୍ତ୍ତିଗୁଡ଼ିକର ନକଲ ଏଠାରେ ଦେଉଅଛୁ ।

ଗୋଲ୍‌ବାସ୍ତୋ ମୋମାରେମ ଏଭ୍‌ଲେମ ଗୁଢ଼ଲେ ଶେଫିନ ମୁଲ୍ ଉଲ୍‌ଚିଉ (ରାଜାଙ୍କ ଉପାଧି) ଯେ ସମଗ୍ର ଜଗତର ଅନନ୍ଦଦାତା ଓ ଭୟଦାତା—ଯାହାଙ୍କ ସାମ୍ରାଜ୍ୟ ପାଞ୍ଚ ସହସ୍ର ବଲ୍‌ଷ୍ଟୁଗ ( ଅର୍ଥାତ୍ ବାରମାଇଲ ପରିଧିବିଶିଷ୍ଟ) ଧରି ପୃଥିବୀର ଶେଷସୀମା ପର୍ଯ୍ୟନ୍ତ ବିସ୍ତୃତ—ସକଳ ରାଜାଙ୍କର ମହାରାଜା—ମାନବ ଜାତିରେ ଉଚ୍ଚତମ—ଯାହାଙ୍କ ପଦାଘାତ ପୃଥିବୀର କେନ୍ଦ୍ରକୁ କମ୍ପିତ କରିଦିଏ—ଯାହାଙ୍କ ମସ୍ତକ ସୂର୍ଯ୍ୟଙ୍କୁ ସ୍ପର୍ଶ କରୁଅଛି—ଯାହାଙ୍କ ମସ୍ତକସଞ୍ଚାଳନ ମାତ୍ରେ ପୃଥିବୀର ରାଜନ୍ୟବର୍ଗ କମ୍ପିତ ହୁଅନ୍ତି—ଯେ ବସନ୍ତ ସଦୃଶ ଅନନ୍ଦଦାୟକ, ଗ୍ରୀଷ୍ମ ସଦୃଶ ସୁଖଦାୟକ, ଶରତ ସଦୃଶ ଫଳଦାୟକ, ଶୀତ ସଦୃଶ ଭୀଷଣ—ସେହି ପ୍ରବଳପରାକ୍ରାନ୍ତ ଲିଲିପୁଟର ସମ୍ରାଟ୍ ବାହାଦୁର ଶ୍ରୀହଜୁରଙ୍କ ସ୍ୱର୍ଗୀୟ ରାଜ୍ୟରେ ଅଳ୍ପକାଳ ପୂର୍ବେ ଉପସ୍ଥିତ ହୋଇଥିବା ମନୁଷ୍ୟପର୍ବତକୁ ଜଣାଇ ଦେଉଅଛନ୍ତି ଯେ ସେ ଶପଥପୂର୍ବକ ନିମ୍ନଲିଖିତ ସର୍ତ୍ତିଗୁଡ଼ିକ ପାଳନ କରିବାକୁ ବାଧ୍ୟ ରହିବ ।

ପ୍ରଥମ—ଶ୍ରୀହଜୁରଙ୍କ ମୋହରଯୁକ୍ତ ଅଦେଶପତ୍ର ବିନା ମନୁଷ୍ୟ-ପର୍ବତ ଏହି ରାଜ୍ୟରୁ ଅନ୍ୟତ୍ର ଯାଇପାରିବ ନାହିଁ ।

ଦ୍ୱିତୀୟ—ଶ୍ରୀହଜୁରଙ୍କ ସ୍ୱତନ୍ତ୍ର ଅଦେଶ ବିନା ସେ ରାଜଧାନୀରେ ପ୍ରବେଶ କରିପାରିବ ନାହିଁ । ସେ ରାଜଧାନୀକୁ ଅସିବା ସମୟରେ ଅଧିବାସୀମାନଙ୍କୁ ଘରଭିତରେ ରହିବାପାଇଁ ସାବଧାନ କରାଇ ଦିଆଯିବ ।

ତୃତୀୟ—ଉକ୍ତ ମନୁଷ୍ୟପର୍ବତ କେବଳ ସରକାରୀ ପ୍ରଧାନ ରାସ୍ତାମାନଙ୍କ ଉପରେ ଯାଇପାରିବ; କିନ୍ତୁ କୌଣସି ପଡ଼ିଅ ବା ଶସ୍ୟକ୍ଷେତ୍ରଉପରେ ଯାଇପାରିବ ନାହିଁ କିମ୍ବା ଶୋଇପାରିବ ନାହିଁ ।

ଚତୁର୍ଥ—ପ୍ରଧାନ ସୁପ୍ରାଭପରେ ଗଲାବେଳେ ସେ ଶ୍ରୀହଜୁରଙ୍କର ପ୍ରିୟ ପ୍ରଜାମାନଙ୍କମଧ୍ୟରୁ କାହାକୁ, ସେମାନଙ୍କର ଘୋଡ଼ା କମ୍ବା ଗାଈକୁ ଯେପରି ମାଡ଼ି ନ ପକାଏ, ସେଥିପ୍ରତି ସାବଧାନ ରହିବ । ସେ କୌଣସି ପ୍ରଜାକୁ ତାର ବିନାନୁମତିରେ ହାତରେ ଧରିପାରିବ ନାହିଁ ।

ପଞ୍ଚମ—ରାଜସରକାରଙ୍କର ଜରୁରି କାମ ପଡ଼ିଲେ ମନୁଷ୍ୟ-ପର୍ବତ ତାର ପକେଟରେ ଜଣେ ପତ୍ରବାହକ, ତାର ଘୋଡ଼ାକୁ ନେଇ ପ୍ରତି ମାସରେ ଥରେ ଛଅ ଦିନର ବାଟ ଯିବ ଓ ଦରକାର ପଡ଼ିଲେ ପୁଣି ସେମାନଙ୍କୁ ନଗରପଦରେ ଫେରାଇ ଆଣିବାକୁ ବାଧ୍ୟ ରହିବ ।

ଷଷ୍ଠ—ବେଲପୁଂସ୍କୁ ରାଜ୍ୟରେ ଥିବା ଶ୍ରୀହଜୁରଙ୍କ ଶତ୍ରୁମାନଙ୍କ ବିରୁଦ୍ଧରେ ସେ ଶ୍ରୀହଜୁରଙ୍କୁ ସାହାଯ୍ୟ କରିବ ଏବଂ ବର୍ତ୍ତମାନ ଲିଲପୁଟ ଆକ୍ରମଣ ନିମନ୍ତେ ସେମାନେ ରଖିଥିବା ଯୁଦ୍ଧଜାହାଜ-ଗୁଡ଼ିକୁ ଧ୍ୱଂସ କରିବ ।

ସପ୍ତମ—ଉକ୍ତ ମନୁଷ୍ୟପର୍ବତ ଅବସରବେଳେ ଶ୍ରୀହଜୁରଙ୍କ ପ୍ରଧାନ ଉପବନ ଓ ଅନ୍ୟାନ୍ୟ ରାଜକୀୟ ଗୃହନିର୍ମାଣ ନିମନ୍ତେ ବଡ଼ ବଡ଼ ପଥର ଉଠାଇବାରେ ଶ୍ରୀହଜୁରଙ୍କ କାରିଗରମାନଙ୍କୁ ସାହାଯ୍ୟ କରିବ ।

ପରିଶେଷରେ—ପୂର୍ବକଥିତ ମନୁଷ୍ୟପର୍ବତ ଶପଥପୂର୍ବକ ଉଲ୍ଲିଖିତ ସର୍ତ୍ତଗୁଡ଼ିକ ପାଳନ କରିବା ଦୃଷ୍ଟିରୁ ତାହାକୁ ଶ୍ରୀହଜୁରଙ୍କର ୧୭୨୮ ଜଣ ପ୍ରଜାଙ୍କପାଇଁ ଯେତିକି ମାଂସ ଓ ମଦ୍ୟ ଆବଶ୍ୟକ ସେତିକି ମାଂସ ଓ ମଦ୍ୟ ପ୍ରତିଦିନ ଯୋଗାଇ ଦିଆଯିବ ଏବଂ ତାକୁ ଶ୍ରୀହଜୁରଙ୍କ ଛାମୁକୁ ଯେକୌଣସି ସମୟରେ ଆସିବାର ଅଧିକାର ଦିଆଗଲା ।

ଅଦ୍ୟ ଶ୍ରୀହଜୁରଙ୍କ ରାଜତ୍ୱର ୯୧ତମ ମାସର ୧୨ଶ ଦିବସରେ ବେଲଫା ବୋରାକ ପ୍ରାସାଦରୁ ଏହି ଆଦେଶନାମା ଦିଆଗଲା ।

ମୁଁ ଦେଖିଲି ଯେ ଚୁକ୍ତିଗୁଡ଼ିଏ ସର୍ତ୍ତ ମୋ ପକ୍ଷରେ ଅପମାନଜନକ । ବୋଧ ହୁଏ ନୌସେନାପତି ହିଂସା କରି ସେଗୁଡ଼ିକ ଦେଇଛନ୍ତି । ତଥାପି ମୁଁ ସେହି ଆଦେଶନାମାରେ ସ୍ୱାକ୍ଷର କରି ଶପଥ ଗ୍ରହଣ କଲି । ତତ୍‌କ୍ଷଣାତ୍ ମୋର ଶିକୁଳି ଫିଟାଇ ଦିଆଗଲା ଓ ମୁଁ ପୂର୍ଣ୍ଣ ସ୍ୱାଧୀନତା ଲାଭ କଲି ।

ମୋର ମୁକ୍ତିପ୍ରଦାନ-ଉତ୍ସବରେ ସ୍ୱୟଂ ମହାରାଜା ଉପସ୍ଥିତ ରହି ମୋତେ ଅନୁଗୃହୀତ କରିଥିଲେ । ମୁଁ ତାଙ୍କ ନତମସ୍ତକରେ ପ୍ରଣାମ କରନ୍ତେ ସେ ମୋତେ ଠିଆ ହେବାକୁ ଆଦେଶ ଦେଇ କହିଲେ, "ତୁମ୍ଭର ମୁକ୍ତିଲାଭରେ ଆମ୍ଭେ ଆନନ୍ଦିତ । ଆମ୍ଭର ଆଶା ଯେ ତୁମେ ବିଶ୍ୱସ୍ତ ଭୃତ୍ୟରୂପେ ଆମ୍ଭର ସେବା କରିବ ଓ ତୁମ୍ଭପ୍ରତି ଯେଉଁ ଅନୁଗ୍ରହ ଦେଖାଯାଇଅଛି ବା ଦେଖାଯିବ ସେସବୁପାଇଁ ନିଜକୁ ଉପଯୁକ୍ତ କରିବ ।"

— ୧୦ —

ମୁକ୍ତି ପାଇବାପରେ ମୁଁ ରାଜ୍ୟର ପ୍ରଧାନ ନଗରୀ ଦେଖିବାର ଅନୁମତି ପ୍ରାର୍ଥନା କଲି । ସହଜରେ ଅନୁମତି ମିଳିଲା; କିନ୍ତୁ ମୋତେ ବିଶେଷଭାବରେ ଜଣାଇ ଦିଆଗଲା ଯେ ଯେପରି ମୁଁ କୌଣସି ଲୋକର ବା କୌଣସି ପଦାର୍ଥର କ୍ଷତି ନ କରେଁ ।

ମୋର ମିଲ୍‌ଡେଣ୍ଡୋ (ଲିଲିପୁଟର ବୃହତ୍ତମ ନଗରୀ) ଯିବା ସଂବାଦ ରାଜକୀୟ ଘୋଷଣାଦ୍ୱାରା ଜଣାଇ ଦିଆଗଲା । ମୁଁ ଦେଖିଲିଯେ ନଗରୀର ଗୃହପାଖେ ଅଢ଼େଇ ଫୁଟ ଉଚ୍ଚ ଓ ଏଗାର ଇଞ୍ଚ

ଓସାରର ଗୋଟିଏ ପ୍ରାଚୀର ଅଛି । ତେଣୁ ଏହାଉପରେ ଗୋଟିଏ ଘୋଡ଼ାଗାଡ଼ି ସ୍ୱଚ୍ଛନ୍ଦରେ ଯାଇପାରିବ । ସହରଟି ଠିକ୍ ବର୍ଗାକାର ଓ ପ୍ରତି ପାଖର ଦୈର୍ଘ୍ୟ ପାଞ୍ଚ ଶହ ଫୁଟ । ଦୁଇଟି ବଡ଼ ରାସ୍ତା ପୂର୍ବ-ପଶ୍ଚିମ ଓ ଉତ୍ତର-ଦକ୍ଷିଣ ଭାବରେ ପରସ୍ପରକୁ ଛେଦ କରି ସମଗ୍ର ସହରଟିକୁ ଚାରି ଅଂଶରେ ବିଭକ୍ତ କରୁଅଛନ୍ତି । ଏହି ରାସ୍ତାର ଓସାର ପାଞ୍ଚ ଫୁଟ । ତେଣୁ ମୁଁ କେବଳ ଏହି ରାସ୍ତାଉପରେ ଯାଇ ପାରିଥିଲି । ଅନ୍ୟ କେତେକ ରାସ୍ତା ଦେଖିପାରିଥିଲି, କିନ୍ତୁ କୌଣସିଟି ଅଠର ଇଞ୍ଚରୁ ବେଶୀ ଚଉଡ଼ା ହେବ ନାହିଁ ।

ମୁଁ ପଶ୍ଚିମ ଫାଟକ ଡେଇଁ ନଗରମଧ୍ୟକୁ ଗଲି । କାଳେ କୌଣସି ଲୋକ ବା କାହାରି ଘରଉପରେ ପାଦ ପଡ଼ିଯିବ, ଏହି ଭୟରେ ମୁଁ ଅତି ସାବଧାନରେ ଚାଲୁଥାଏଁ । ମୋତେ ଦେଖିବା-ପାଇଁ ଝରକା, ବାରଣ୍ଡା, ଛାତ ସବୁଠାରେ ଲୋକ ରୁଣ୍ଡ ହୋଇଥିବାର ଦେଖିଲି । ସହରରେ ପାଞ୍ଚ ଲକ୍ଷ ଲୋକଙ୍କର ବାସ । ଘରଗୁଡ଼ିକ ତିନି ମହଲାଠାରୁ ପାଞ୍ଚ ମହଲା ପର୍ଯ୍ୟନ୍ତ । ସହରଭିତରେ ବହୁ-ସଂଖ୍ୟକ ଦୋକାନ ବଜାର ମଧ୍ୟ ଅଛି ।

ସହରର ଠିକ୍ ମଝିରେ ଯେଉଁଠାରେ ଦୁଇଟି ବଡ଼ ରାସ୍ତା ମିଳିଛି, ସେଠାରେ ମହାରାଜାଙ୍କ ନଅର । ନଅର ଚାରିପାଖେ ଦୁଇ ଫୁଟ ଉଚ୍ଚ ପ୍ରାଚୀର ବେଢ଼ିଛି । ମୁଁ ସେ ପାଚେରି ଡେଇଁ ରାଜପ୍ରାସାଦର ଦୃଶ୍ୟ ଦେଖିପାରିଥିଲି । କିନ୍ତୁ ମୋପକ୍ଷରେ ଅନ୍ଦର-ମହଲ ପର୍ଯ୍ୟନ୍ତ ଯିବା ସମ୍ଭବ ନ ଥିଲା । କିନ୍ତୁ ମହାରାଜା ତାଙ୍କ ପ୍ରାସାଦର ଆଡ଼ମ୍ବର ମୋତେ ଦେଖାଇବାକୁ ଇଚ୍ଛା କରିଥିଲେ । ତେଣୁ ତିନି ଦିନପରେ ଆଉ ଥରେ ଆସି ଅନେକ କଷ୍ଟରେ ଅନ୍ଦର-ମହଲ ଦେଖିପାରିଥିଲି ।

ମୁଁ ବନ୍ଧନରୁ ମୁକ୍ତି ପାଇବାର ପ୍ରାୟ ପନ୍ଦର ଦିନପରେ ଦିନେ ସକାଳେ ମହାରାଜାଙ୍କ ଘରୋଇ ବିଭାଗର ପ୍ରଧାନ ସେକ୍ରେଟରୀ ଜଣେ ଗୁଜର ସହିତ ମୋ ଘରେ ପହଞ୍ଚିଲେ । ସେ ତାଙ୍କ ଘୋଡ଼ାଗାଡ଼ିକୁ କିଛି ଦୂରରେ ରଖି ଆସିଥିଲେ ।

ମୁଁ ଶୋଇପଡ଼ି ତାଙ୍କ କଥା ଶୁଣିବାକୁ କହିଲି; କିନ୍ତୁ ସେ କହିଲେ, "ତୁମେ ମୋତେ ତୁମ ହାତରେ ଛୁଞ୍ଚା କରାଇ କାନ ପାଖରେ ଧରିଲେ କଥାବାର୍ତ୍ତାର ସୁବିଧା ହେବ ।"

ତାହାହିଁ ହେଲା । ପ୍ରଧାନ ସେକ୍ରେଟରୀ ମହୋଦୟ ପ୍ରଥମେ ମୋ ମୁକ୍ତିରେ ଆନନ୍ଦ ପ୍ରକାଶ କରି କହିଲେ ଯେ ସେ ମଧ୍ୟ ଏଥିରେ ଯଥାସାଧ୍ୟ ସାହାଯ୍ୟ କରିଅଛନ୍ତି; କିନ୍ତୁ ରାଜପରିଷଦରେ ଉପସ୍ଥିତ ଅବସ୍ଥା ସେହିପରି ଅନୁକୂଳ ହୋଇ ନ ଥିଲେ ବୋଧ ହୁଏ ଏତେ ଶୀଘ୍ର ମୋତେ ମୁକ୍ତି ମିଳି ନ ଥାନ୍ତା ।

ସେ କହିଲେ, "ବିଦେଶୀଙ୍କ ଦୃଷ୍ଟିରେ ଲିଲିପୁଟ ଗୋଟିଏ ବିରାଟ ଶକ୍ତିଶାଳୀ ରାଜ୍ୟ ବୋଲି ପରିଚିତ ଥିଲେହେଁ ଆମର ଦୁଇଟି ପ୍ରଧାନ ସମସ୍ୟା ଅଛି । ଗୋଟିଏ ହେଉଛି ଦେଶମଧ୍ୟରେ ଘୋର ବିରୋଧ ଓ ଅନ୍ୟଟି ହେଉଛି ଏକ ବିଦେଶୀ ପ୍ରବଳ ଶତ୍ରୁର ଆକ୍ରମଣର ଆଶଙ୍କା । ଆମ ଦେଶଭିତରେ ଗତ ୭୦ ମାସ ଧରି ଦୁଇଟି ଦଳର ସୃଷ୍ଟି ହୋଇଛି । ଗୋଟିଏ ଦଳର ନାମ ଟ୍ରାମେକସନ୍ ବା ଉଚ୍ଚଗୋଇଁଆ ଏବଂ ଅନ୍ୟ ଦଳଟି ସ୍ଲାମେକସନ୍ ବା ନୀଚଗୋଇଁଆ । ଟ୍ରାମେକସନ୍ ଦଳର ଲୋକେ ଜୋତାରେ ଉଚ୍ଚ ତଳି ଲଗାନ୍ତି; କିନ୍ତୁ ସ୍ଲାମେକସନ୍ ଦଳର ଲୋକେ ଅଳ୍ପ ଉଚ୍ଚର ତଳି ବ୍ୟବହାର କରନ୍ତି । ଆମ ଦେଶର ପ୍ରାଚୀନ ବିଧାନ ଅନୁସାରେ ଉଚ୍ଚ ତଳି ଲଗାଇବାର କଥା; କିନ୍ତୁ ଆମର ବର୍ତ୍ତମାନ ସମ୍ରାଟ୍ କେବଳ ନୀଚଗୋଇଁଆ-ମାନଙ୍କୁ ରାଜସରକାରରେ ନିଯୁକ୍ତ କରୁଅଛନ୍ତି । ଠିକ୍ଏ ଲକ୍ଷ୍ୟ

କଲେ ତୁମେ ଦେଖିପାରିବ ଯେ ସବୁ ସରକାରୀ କର୍ମଚାରୀଙ୍କ କୋଠାର ଉଚ୍ଚ ଅଳ୍ପ ଉଚ୍ଚ । ଆଜି ସମ୍ରାଟଙ୍କ କୋଠାର ଉଚ୍ଚ ସବୁଠାରୁ ଅଳ୍ପ ଉଚ୍ଚ । ଏହି ଦୁଇ ଦଳମଧ୍ୟରେ ଏପରି ଶତ୍ରୁତା ଅଛି ଯେ ଗୋଟିଏ ଦଳର ଲୋକ ଅନ୍ୟ ଦଳର ଲୋକ ସଙ୍ଗେ ବସି ଖିଆପିଆ ସୁଦ୍ଧା କରିବ ନାହିଁ ।

ଟ୍ରାମେକସନ୍ ବା ଉଚ୍ଚଗୋଡ଼ିଆଙ୍କର ସଂଖ୍ୟା ଅଧିକ ହେବା ସମ୍ଭବ; କିନ୍ତୁ ଆମ ହାତରେ ସବୁ କ୍ଷମତା ରହିଛି । ଆମର ଗୋଟିଏ ଆଶଙ୍କା ହେଲାଣି, ଯୁବରାଜଙ୍କର ଟ୍ରାମେକସନ୍‌ମାନଙ୍କ ପ୍ରତି ସହାନୁଭୂତି ଅଛି । ତାଙ୍କର ଗୋଟାଏ ଗୋଡ଼ର କୋଠାରେ ଉଚ୍ଚ ଉଚ୍ଚ ଲାଗିଛି । ତେଣୁ ସେ ଟିକିଏ ଖୋଟେଇ ଚାଲିବାର ଜଣାଯାଏ । ଏ ଗୋଟିଏ ସମସ୍ୟା ।

ଦେଶମଧ୍ୟରେ ଏ ମତଭେଦ । ତାଛଡ଼ା ବ୍ଲେଫୁସ୍କୁ ରାଜ୍ୟ ଆମ ଉପରେ ଆକ୍ରମଣ କରିବାକୁ ପ୍ରସ୍ତୁତ ହେଉଛି ବୋଲି ସମ୍ବାଦ ମିଳିଛି । ଜଗତରେ ଦୁଇଟି ସାମ୍ରାଜ୍ୟମଧ୍ୟରୁ ଆମ ଲିଲିପୁଟ ଗୋଟିଏ, ଅନ୍ୟଟି ହେଉଛି ବ୍ଲେଫୁସ୍କୁ ।

ଅବଶ୍ୟ ତୁମେ କହିବ ଯେ ଆଜି ଅନେକ ରାଜ୍ୟ ଅଛି । ସେ ରାଜ୍ୟମାନଙ୍କରେ ତୁମରି ପରି ପର୍ବତପ୍ରମାଣ ମନୁଷ୍ୟମାନେ ଅଛନ୍ତି । କିନ୍ତୁ ଏ ବିଷୟରେ ଆମ ପଣ୍ଡିତମାନଙ୍କର ଘୋର ସନ୍ଦେହ । ସେମାନଙ୍କର ବିଶ୍ୱାସ, ତୁମେ ଚନ୍ଦ୍ରରୁ କିମ୍ବା କୌଣସି ଗ୍ରହରୁ ଖସି-ପଡ଼ିଛ । ତୁମଭଳି ଯଦି ଶହେ ଜଣ ଲୋକ କୌଣସି ରାଜ୍ୟରେ ରହନ୍ତି, ତେବେ ଅଳ୍ପ ଦିନଭିତରେ ସେ ରାଜ୍ୟର ଜୀବଜନ୍ତୁ ଶସ୍ୟ କିଛି ରହିବ ନାହିଁ । ପୁଣି ଆମର ଗତ ଛଅ ହଜାର ମାସର ଯେଉଁ ଇତିହାସ ଅଛି, ସେଥିରେ ଲିଲିପୁଟ ଓ ବ୍ଲେଫୁସ୍କୁ ଏହି ଦୁଇଟି ଛଡ଼ା ଅନ୍ୟ କୌଣସି ରାଜ୍ୟର ଉଲ୍ଲେଖ ନାହିଁ ।

ଯାହା ହେଉ, ଏହି ଦୁଇ ରାଜ୍ୟମଧ୍ୟରେ ଗଲା ୩୬ ମାସ ହେଲା ଘୋର ଶତ୍ରୁତା ଲାଗିଛି । ଏ ଶତ୍ରୁତାର କାରଣଟା କହିବା ଦରକାର । ଅତି ପୂର୍ବକାଳରୁ ଲୋକେ ଡିମ୍ବ ଖାଇବାବେଳେ ଲମ୍ବ ବାଗରେ ଭାଙ୍ଗି ଖାଉଥିଲେ । କିନ୍ତୁ ବର୍ତ୍ତମାନ-ମହାରାଜାଙ୍କର ଅଜା ପିଲାଦିନେ ଥରେ ଗୋଟିଏ ଅଣ୍ଡା ଭାଙ୍ଗୁଭାଙ୍ଗୁ ହାତ କାଟି ପକାଇଲେ । ତହୁଁ ସେତେବେଳର ମହାରାଜା ଏକ ଆଦେଶ ପ୍ରଚାର କଲେ ଯେ ସମସ୍ତେ ସରୁ ବାଗରେ ଡିମ୍ବ ଭାଙ୍ଗି ଖାଇବେ । ଏହି ଆଇନ ହେତୁ ଲୋକେ ବଡ଼ ବିରକ୍ତ ହେଲେ । ଇତିହାସରୁ ଜଣାଯାଏ ଯେ, ଏହି ଆଇନ ପାଇଁ ଛଅଟି ବିପ୍ଳବ ଘଟିଯାଇଛି; ଜଣେ ସମ୍ରାଟ୍ ମୃତ୍ୟୁମୁଖରେ ପଡ଼ିଛନ୍ତି ଓ ଆଉ ଜଣେ ସିଂହାସନ ତ୍ୟାଗ କରିଅଛନ୍ତି । ବ୍ଲେଫୁସ୍କୁର ରାଜାମାନେ ଆମର ଏହି ଅନ୍ତର୍ବିବାଦର ସୁଯୋଗ ନେଇ ବିଦ୍ରୋହୀମାନଙ୍କୁ ଉତ୍ତେଜିତ କରନ୍ତି । ଯେଉଁମାନଙ୍କୁ ନିର୍ବାସନ କରାଯାଏ, ସେମାନେ ପଳାଇ ଯାଇ ସ୍ୱଚ୍ଛନ୍ଦରେ ବ୍ଲେଫୁସ୍କୁରେ ଆଶ୍ରୟ ନିଅନ୍ତି ।

ଏ ସମ୍ବନ୍ଧରେ ଆମର ଶାସନ ବିଧାନରେ ଅଛି—ପ୍ରତ୍ୟେକ ଧର୍ମବିଶ୍ୱାସୀ ଲୋକ ଡିମ୍ବକୁ ଯେଉଁ ଆଡ଼ୁ ସୁବିଧା ସେହି ଆଡ଼ୁ ଭାଙ୍ଗି ଖାଏ । କିନ୍ତୁ ପ୍ରଶ୍ନ ହେଉଛି, କେଉଁ ଆଡ଼ଟି ସୁବିଧାଜନକ ? ମୋ ମତରେ ଏ ପ୍ରଶ୍ନର ମୀମାଂସା ପ୍ରତ୍ୟେକେ ନିଜ ବିବେକ ଅନୁସାରେ କରିବା ଉଚିତ, ନଚେତ୍ ବିଚାରକ ବା ରାଜା ଯାହା ସିଦ୍ଧାନ୍ତ କରିବେ ତାହା ମାନିନେବା ଉଚିତ ।

ଯେଉଁ ଲମ୍ବବାଗିଆମାନେ ରାଜ୍ୟରୁ ବିତାଡ଼ିତ ହୋଇଛନ୍ତି, ସେମାନଙ୍କୁ ବ୍ଲେଫୁସ୍କୁ ସରକାର ସାହାଯ୍ୟ କରୁଛନ୍ତି । ରାଜ୍ୟମଧ୍ୟରେ ସେମାନଙ୍କ ଦଳ ମଧ୍ୟ ସେମାନଙ୍କୁ ସାହାଯ୍ୟ ଦେଉଛି । ଫଳରେ ଦୁଇ ରାଜ୍ୟମଧ୍ୟରେ ୩୬ ମାସ ହେଲା ଯୁଦ୍ଧ ଲାଗିଛି । କେତେବେଳେ

ଆମେ ଜାଣୁ ନାହୁଁ, କେତେବେଳେ ବା ସେମାନେ ଜାଣୁଛନ୍ତି । ଏଥି-ମଧ୍ୟରେ ଆମର ୪୦ ଟି ବଡ଼ ଜାହାଜ ଓ ଅନେକ ଛୋଟ ଜାହାଜ ନଷ୍ଟ ହୋଇଛି । ଆମର ପ୍ରାୟ ୩୦ହଜାର ସୈନ୍ୟ ନଷ୍ଟ ହୋଇଛନ୍ତି । ଶତ୍ରୁମାନଙ୍କର ଆମ ଅପେକ୍ଷା ଅଧିକ କ୍ଷତି ହୋଇଛି ।

ଏବେ ସେମାନେ ଅନେକ ଯୁଦ୍ଧଜାହାଜ ପ୍ରସ୍ତୁତ କରି ଆମ ରାଜ୍ୟ ଆକ୍ରମଣ କରିବାକୁ ବାହାରିଛନ୍ତି । ଆମ ମହାରାଜାଙ୍କ ବିଶ୍ୱାସ ଯେ, ତୁମେ ସାହସୀ ଓ ବଳବାନ୍ । ତେଣୁ ଏସବୁ କଥା ତୁମକୁ ଜଣାଇବାକୁ ଶ୍ରୀହଜୁରରୁ ମୋତେ ହୁକୁମ ହୋଇଛି ।"

ମୁଁ କହିଲି, "ମହାରାଜାଙ୍କ ପ୍ରତି ମୋର କର୍ତ୍ତବ୍ୟ ଅଛି ମୁଁ ସ୍ୱୀକାର କରେଁ; କିନ୍ତୁ ମୋ ପରି ଜଣେ ବିଦେଶୀ ପକ୍ଷରେ କୌଣସି ଦଳରେ ଯୋଗ ଦେବା ଉଚିତ ହେବ ନାହିଁ । ତଥାପି ଶ୍ରୀହଜୁରଙ୍କୁ ଏବଂ ତାଙ୍କ ରାଜ୍ୟକୁ ଶତ୍ରୁଠାରୁ ରକ୍ଷା କରିବା ପାଇଁ ମୁଁ ପ୍ରାଣପଣେ ଚେଷ୍ଟା କରିବି ।"

— ୧୧ —

ଲିଲିପୁଟର ଉତ୍ତର-ପୂର୍ବ ଦିଗରେ ବ୍ଲେଫୁସ୍କୁଦ୍ୱୀପ ଅବସ୍ଥିତ । ଦୁଇ ରାଜ୍ୟମଧ୍ୟରେ ପ୍ରାୟ ଆଠ ଶହ ଗଜ ଓସାରର ଗୋଟିଏ ପ୍ରଣାଳୀ । ଏହି ପ୍ରଣାଳୀଟି ରାଜ୍ୟଦ୍ୱୟକୁ ବିଭକ୍ତ କରି ରଖିଛି । ମୋ ଦୃଷ୍ଟି କେବେ ଏହି ରାଜ୍ୟଉପରେ ପଡ଼ି ନ ଥିଲା । ଏବେ ଦୁଇ ରାଜ୍ୟମଧ୍ୟରେ ଯୁଦ୍ଧ ଆଶଙ୍କା ଥିବାରୁ ମୁଁ ଦ୍ୱୀପର ଉତ୍ତର-ପୂର୍ବ ଦିଗରେ ସମୁଦ୍ରକୂଳ ଆଡ଼କୁ ଆଉ ଗଲି ନାହିଁ । ଆମ ମହାରାଜାଙ୍କ ଆଦେଶ ଅନୁସାରେ ବ୍ଲେଫୁସ୍କୁ ସହିତ ଲିଲିପୁଟର ସବୁ ସମ୍ପର୍କ ତୁଟାଇ ଦିଆଯାଇଥିଲା । ଲିଲିପୁଟର କେହି ବ୍ଲେଫୁସ୍କୁ ସହିତ

ସମ୍ବନ୍ଧ ରଖିଥିବାର ଜଣାଗଲେ ତାକୁ ପ୍ରାଣଦଣ୍ଡ ଦିଆଯିବ ବୋଲି ଜଣାଇ ଦିଆଯାଇଥିଲା ।

ଶତ୍ରୁ ପକ୍ଷର ସମସ୍ତ ଯୁଦ୍ଧଜାହାଜ ଉପରେ ଅଗ୍ନିପାତର ତାର ଗୋଟିଏ ଉପାୟ ସ୍ଥିର କରି ମୁଁ ଶ୍ରୀହଜୁରରେ ଜଣାଇଲି । ଆମର ଗୁପ୍ତଚରମାନେ ସମ୍ବାଦ ଦେଲେ ଯେ ବ୍ଲେଫୁସ୍କୁର ନୌବାହିନୀ ବନ୍ଦରରେ ପ୍ରସ୍ତୁତ ଅଛି । ଅନୁକୂଳ ବାୟୁ ବହିଲେ ଲିଲିପୁଟ ଆକ୍ରମଣ କରିବେ ।

ଅଭିଜ୍ଞ ନୌଚାଳକଙ୍କଠାରୁ ବୁଝି ଜାଣିଲି ଯେ ପ୍ରଣାଳୀର ଗଭୀରତମ ଅଂଶ ପ୍ରାୟ ଛଅ ଫୁଟ । ଅନ୍ୟ ଅଂଶ ଗୁଡ଼ିକ ପାଞ୍ଚ ଫୁଟରୁ ବେଶୀ ନୁହେଁ । ତେବେ ମୁଁ ବ୍ଲେଫୁସ୍କୁ ଆଡ଼ ସମୁଦ୍ରକୂଳକୁ ଯାଇ ଗୋଟିଏ ପାହାଡ଼ ପଛରେ ଲୁଚିଲି । ମୋର ଛୋଟ ଦୂରବୀକ୍ଷଣ-ଦ୍ୱାରା ଦେଖିପାରିଲି ଯେ ପ୍ରାୟ ପଚାଶଟି ଯୁଦ୍ଧଜାହାଜ ବନ୍ଦରରେ ଅଛି । ପାଖରେ ଅନେକ ଜାହାଜପତ୍ର ମଧ୍ୟ ଅଛି । ମୁଁ ଘରକୁ ଫେରିଆସି କେତେକ ଶକ୍ତ ଦଉଡ଼ି ଓ ଲୁହା ଶାବଳପାଇଁ ବରାଦ ଦେଲି । ଏସବୁ ଆସିଲା । ମୁଁ ତିନୋଟି ଦଉଡ଼ିକୁ ଏକାଠି କରି ଗୋଟିଏ ଲେଖାଏଁ କଲି । ଏହା ଆମ ଦେଶର ମୋଟ ସୂତା ପରି ହେଲା । ତହୁଁ ତିନୋଟି ଶାବଳକୁ ଏକତ୍ର ମୋଡ଼ି ଗୋଟିଏ କଲି । ସେଇଟି ଆମ ଦେଶର ଛୋଟ ଛୁଞ୍ଚି ପରି ଦିଶୁଥାଏ । ତାର ଗୋଟିଏ ମୁଣ୍ଡ ବଙ୍କାଇଦେବାରୁ ବନଶିକଣ୍ଟାପରି ଦିଶିଲା । ଏହିପରି ପଚାଶଟି ମୋଟ ସୂତାକୁ ପଚାଶଟି ବନଶିକଣ୍ଟାର ପଛ ମୁଣ୍ଡରେ ବାନ୍ଧିଲି । ସମୁଦ୍ରକୂଳରେ ମୋ କୁରୁତା, ଜୋତା ଓ ମୋଜା ରଖିଦେଇ ମୁଁ ସମୁଦ୍ରରେ ପଶିଲି । ସେତେବେଳକୁ ଜୁଆର ଆସିବାକୁ କିଛି ସମୟ ଥାଏ ।

ମୁଁ ଖୁବ୍ ବେଗରେ ଗ୍ରଲିଲି । ମଝିରେ ପ୍ରାୟ ୩୨ ଗଜ ପହଁରିବାକୁ ପଡ଼ିଲା । ଅଧଘଣ୍ଟାରୁ କମ୍ ସମୟରେ ମୁଁ ଯୁଦ୍ଧଜାହାଜ ନିକଟରେ ପହଞ୍ଚିଗଲି । ମୋତେ ଦେଖିଲକ୍ଷଣି ଶତ୍ରୁମାନେ ଭୀତ ହୋଇ ଯାଇ ଅନେକେ ଜାହାଜରୁ ଡେଇଁପଡ଼ି କୂଳକୁ ପହଁରିଗଲେ । କୂଳରେ ବି ଅନେକ ଲୋକ ଥାଆନ୍ତି । ସେମାନଙ୍କ ସଂଖ୍ୟା ତିରିଶ ହଜାରରୁ କମ୍ ହେବ ନାହିଁ ।

ମୁଁ ସୂତା ଓ କଣ୍ଟିଗୁଡ଼ିକ ବାହାର କରି ପ୍ରତି ଜାହାଜର ମୁଣ୍ଡରେ କଣ୍ଟାଟିଏ ଲେଖାଏଁ ଗଳାଇଦେଲି । ସୂତାଗୁଡ଼ିକର ଅଗକୁ ଏକାଠି ଗଣ୍ଠି ପକାଇ ହାତରେ ଧରିଲି ।

ଏଥିମଧ୍ୟରେ ଶତ୍ରୁମାନେ କୂଳରୁ ମୋ ଉପରେ ଅନେକ ଶର ମାରିଲେ । ସେଥିରେ ମୋତେ ବଡ଼ ବାଧୁଥାଏ ଓ କାମରେ ମଧ୍ୟ ଅସୁବିଧା ଘଟୁଥାଏ । କାଳେ ଆଖିରେ ଶର ବାଜିଯିବ, ଏହାହିଁ ମୋର ବଡ଼ ଭୟ । ମୋ ପକେଟରେ ଚଷମା ଥିଲା । ତାକୁ ପିନ୍ଧିବାପରେ ନିଜକୁ ଟିକିଏ ନିରାପଦ ମନେ କଲି ।

ସୂତାଗୁଡ଼ିକର ଅଗକୁ ଧରି ଟାଣିଲି; କିନ୍ତୁ ଜାହାଜ ଆଦୌ ଚଳିଲା ନାହିଁ । ମନେ ପଡ଼ିଲା ଯେ ଜାହାଜଗୁଡ଼ିକ ଲଙ୍ଗର ଭିଡ଼ିଛନ୍ତି । ତହୁଁ ଛୁରୀ ବାହାର କରି ଲଙ୍ଗରଗୁଡ଼ିକର ଦଉଡ଼ିସବୁ କାଟି-ଦେଲି । ଏବେ ମୁଁ ଗଣ୍ଠିକୁ ହାତରେ ଧରି ସମୁଦ୍ରରେ ଲିଲିପୁଟ ଆଡ଼କୁ ଗ୍ରଲିଲି । ଜାହାଜଗୁଡ଼ିକ ମୋ ପଛେ ପଛେ ଗ୍ରଲିଲା । ଶତ୍ରୁମାନେ ପ୍ରଥମେ ମୋର ଉଦ୍ଦେଶ୍ୟ ଜାଣି ପାରି ନ ଥିଲେ; କିନ୍ତୁ ସେମାନଙ୍କ ଜାହାଜ ମୋ ପଛେ ପଛେ ଟାଣି ହୋଇ ଆସୁଥିବାର ଦେଖି ସେମାନେ ଭୟ ଓ ବିସ୍ମୟରେ ଚିତ୍କାର କରିଉଠିଲେ ।

କିଛି ଦୂର ଆସି ଦେଖିଲି ଯେ ଶତ୍ରୁର ଶର ଆଉ ମୋଠାରେ ବାଜିବାର ଭୟ ନାହିଁ । ମୁଁ ସ୍ଥିର ହୋଇ ଠିଆ ହେଲି ଓ ଦେହରେ

ଲାଗିଥିବା ଶରଗୁଡ଼ିକୁ ଟାଣି ବାହାର କରିଦେଲି । ମୋ ପାଖରେ କିଛି ମଲମ ଥିଲା । ତାକୁ କ୍ଷତସ୍ଥାନମାନଙ୍କରେ ଲଗାଇଦେଲି; ଟିକିଏ ଆରାମ ଲାଗିଲା । ତାପରେ କାଛିଗୁଡ଼ିକ ଧରି ପୁଣି ମୁଁ ଜାହାଜ ସହିତ ଚାଲିଲି । ପୂର୍ବ ପରି ମଝି ଅଂଶଟି ପହଁରି ଆସିଲି ।

ଏଣେ ଲିଲିପୁଟର ସମ୍ରାଟ୍ ପାରିଷଦମାନଙ୍କ ସହିତ ସମୁଦ୍ର-କୂଳରେ ଚାହିଁ ରହିଥାନ୍ତି । ସେମାନେ ଦୂରରୁ ବ୍ଲେଫୁସ୍କୁର ଜାହାଜ ଆସୁଥିବାର ଦେଖିପାରିଲେ; ମାତ୍ର ମୁଁ ପାଣିଭିତରେ ରହିଥିବାରୁ ମୋତେ ଦେଖି ପାରି ନ ଥିଲେ । ପ୍ରଥମେ ସେମାନଙ୍କର ଧାରଣା ହେଲା ଯେ ମୁଁ ସମୁଦ୍ରରେ ବୁଡ଼ି ମରିଯାଇଛି । ବ୍ଲେଫୁସ୍କୁର ଯୁଦ୍ଧ-ଜାହାଜ ସେମାନଙ୍କୁ ଆକ୍ରମଣ କରିବାକୁ ଆସୁଛି । କିନ୍ତୁ ପାଣିର ଗଭୀରତା କମି ଆସିବାରୁ ମୁଁ ଦେଖାଗଲି । କୂଳର ନିକଟ ହେବାରୁ ମୁଁ ଦଉଡ଼ିଗୁଡ଼ିକ ହାତରେ ଧରି ଉଚ୍ଚ ସ୍ୱରରେ କହିଲି, "ପ୍ରତାପଶାଳୀ ଲିଲିପୁଟର ମହାରାଜା ଦୀର୍ଘଜୀବୀ ହୁଅନ୍ତୁ ।"

ମୁଁ କୂଳରେ ପହଞ୍ଚିବା ମାତ୍ରେ ସମ୍ରାଟ୍ ମୋତେ ଅଭ୍ୟର୍ଥନା ଜଣାଇ ତତ୍‌କ୍ଷଣାତ୍ ମୋତେ ନର୍ଡ଼ାକ୍ ଉପାଧିରେ ଭୂଷିତ କଲେ । ଏହା ସେଦେଶର ଉଚ୍ଚତମ ଉପାଧି ।

ମହାରାଜା ମୋତେ ଜଣାଇଦେଲେ ଯେ ବ୍ଲେଫୁସ୍କୁର ଆଉ ଯେତେ ଜାହାଜ ଅଛି ସବୁ ନେଇ ଆସିବାକୁ ହେବ । ବୁଝିଲି ଯେ ବ୍ଲେଫୁସ୍କୁ ରାଜ୍ୟକୁ ସମ୍ପୂର୍ଣ୍ଣ ପରାସ୍ତ କରି ଲିଲିପୁଟର ଅଧୀନ କରିବା ଏବଂ ଜଣେ ରାଜପ୍ରତିନିଧିଦ୍ୱାରା ତାକୁ ଶାସନ କରିବା ମହାରାଜାଙ୍କର ଇଚ୍ଛା । ଅଧିକନ୍ତୁ ମଧ୍ୟ ସେଦେଶରେ ଯେଉଁ ଲମ୍ବ-ବାଗିଆମାନେ ଆଶ୍ରୟ ନେଇଅଛନ୍ତି ସେମାନଙ୍କୁ ଧ୍ୱଂସ କରାଯିବ । ମୁଁ ମହାରାଜାଙ୍କର ଏହି ଉଚ୍ଚ ଅଭିଳାଷ ଦେଖି ବିସ୍ମିତ ହୋଇଗଲି ।

ମୁଁ ମହାରାଜାଙ୍କୁ ଏହି ପ୍ରସ୍ତାବରୁ ବିରତ ହେବାକୁ ବୁଝାଇ କହିଲି ଯେ, ବ୍ଲେଫୁସ୍କୁ ମଧ୍ୟ ଗୋଟିଏ ସ୍ୱାଧୀନ ରାଜ୍ୟ; ମୋପରି ଜଣେ ବିଦେଶୀ ପକ୍ଷରେ ତାହାର ସ୍ୱାଧୀନତା ହରଣ କରିବା ଘୋର ଅନ୍ୟାୟ ହେବ ।

ଏହି ପ୍ରଶ୍ନ ପରେ ମହାରାଜାଙ୍କ ସଭାସଦରେ ପଡ଼ିଥିଲା । ମନ୍ତ୍ରୀ-ମାନଙ୍କମଧ୍ୟରୁ କେତେକେ ମଧ୍ୟ ନୀରବ ରହି ମୋତେ ସମର୍ଥନ ଜଣାଇଲେ । କିନ୍ତୁ ମୋର ଏହି ସ୍ପଷ୍ଟ ପ୍ରତିବାଦ ଶୁଣି ମହାରାଜା ମୋ ଉପରେ ବିରକ୍ତ ହୋଇଥିଲେ । ସେହି ଦିନଠାରୁ ମହାରାଜା ଓ ମୋର ବିରୋଧୀ କେତେକ ସଭ୍ୟ ମୋ ବିରୁଦ୍ଧରେ ରହିଲେ । ପ୍ରାୟ ଦୁଇ ମାସମଧ୍ୟରେ ଅବସ୍ଥା ଏପରି ହୋଇପଡ଼ିଲା ଯେ ମୋର ପ୍ରାଣର ଆଶା ରହିଲା ନାହିଁ । ରାଜାମାନଙ୍କର ଯେତେ ଉପକାର କରିଥାଅ ପଛକେ ସେମାନଙ୍କୁ ବିଶ୍ୱାସ ନାହିଁ । ପ୍ରକୃତରେ ଗୃଣକ୍ୟ କହିଛନ୍ତି, 'ବିଶ୍ୱାସୋ ନୈବ କର୍ତ୍ତବ୍ୟଂ ସ୍ତ୍ରୀଷୁ ରାଜକୁଳେଷୁ ଚ' ।

—୧୨—

ଏହି ଘଟନାର କିଛି ଦିନପରେ ବ୍ଲେଫୁସ୍କୁର ରାଷ୍ଟ୍ରଦୂତମାନେ ସନ୍ଧିର ପ୍ରସ୍ତାବ ନେଇ ଲିଲିପୁଟରେ ଉପସ୍ଥିତ ହେଲେ । ସନ୍ଧିର ସର୍ତ୍ତଗୁଡ଼ିକ ଅବଶ୍ୟ ଲିଲିପୁଟ ପକ୍ଷରେ ଲାଭଜନକ ଥିଲା ।

ବ୍ଲେଫୁସ୍କୁରୁ ଛଅ ଜଣ ରାଷ୍ଟ୍ରଦୂତ ପାଞ୍ଚ ଶହ ଜଣ କର୍ମଚାରୀ ଓ ଭୃତ୍ୟଙ୍କ ସହିତ ଆସିଲେ । ସନ୍ଧିପତ୍ର ସ୍ୱାକ୍ଷରିତ ହେବାପରେ ସେମାନେ ସାକ୍ଷାତ କରି ମୋର ସାହସ ଓ ଉଦାରତାର ପ୍ରଶଂସା କଲେ । ସେମାନେ ମୋତେ ବ୍ଲେଫୁସ୍କୁର ମହାରାଜାଙ୍କ ପକ୍ଷରୁ ଉକ୍ତ ରାଜ୍ୟକୁ ନିମନ୍ତ୍ରଣ କଲେ ।

ମୁଁ ମଧ୍ୟ ସେମାନଙ୍କ ଦ୍ୱାରା ବ୍ଲେଫୁସ୍କୁର ମହାରାଜାଙ୍କ ପ୍ରତି ମୋର ଶ୍ରଦ୍ଧା ଓ ସମ୍ମାନ ଜଣାଇଲି । ବ୍ଲେଫୁସ୍କୁ ଦେଖିବାପାଇଁ ମୋର ପ୍ରବଳ ଇଚ୍ଛା ହେଲା । ଆନନ୍ଦରେ ମୁଁ ସେମାନଙ୍କ ନିମନ୍ତ୍ରଣ ଗ୍ରହଣ କଲି ।

ସୁବିଧା ପାଇଲାମାତ୍ରେ ମୁଁ ମହାରାଜାଙ୍କୁ ବ୍ଲେଫୁସ୍କୁ ଯିବାପାଇଁ ଅନୁମତି ମାଗିଲି । ଅନୁମତି ମିଳିଲା ସତ୍ୟ, କିନ୍ତୁ ମହାରାଜାଙ୍କର ବ୍ୟବହାରରେ ସେତେ ବନ୍ଧୁତା ଥିଲାପରି ଜଣାଗଲା ନାହିଁ । ପରେ ସେଥିର କାରଣ ଜାଣିପାରିଲି । ବ୍ଲେଫୁସ୍କୁ ରାଜଦୂତଙ୍କ ସଙ୍ଗେ ମୋର କଥାବାର୍ତ୍ତାବେଳେ ଫ୍ଲିମନାପ ଓ ବୋଲ୍‌ଗୋଲମ ନାମକ ଦୁଇ ଜଣ ଉଚ୍ଚକର୍ମଚାରୀ ଉପସ୍ଥିତ ଥିଲେ । ସେମାନେ ଆମ ମହାରାଜାଙ୍କୁ ବୁଝାଇଦେଲେ ଯେ, ମୋର ଲିଲିପୁଟ ଓ ତାର ମହାରାଜାଙ୍କ ପ୍ରତି ଆନୁଗତ୍ୟ ନାହିଁ । ଅବଶ୍ୟ ଏହା ଏକାବେଳେ ମିଥ୍ୟା । ଏବେ ମୁଁ ରାଜସଭାର କୂଟନୀତି ବିଷୟ ଜାଣିପାରିଲି ।

ଏଇଠାରେ ଲିଲିପୁଟର ଲୋକମାନଙ୍କର ରୀତିନୀତି, ଆଚାର-ବ୍ୟବହାର କଥା କହିବି । ଲିଲିପୁଟର ଲୋକେ ବ୍ଲେଫୁସ୍କୁର ଲୋକଙ୍କ ସହିତ ଚିରକାଳ ସମ୍ପର୍କ ରଖିଆସିଥିଲେହେଁ ଏ ଦୁଇ ଜାତିର ଭାଷା ସମ୍ପୂର୍ଣ୍ଣ ଭିନ୍ନ । ଦୁଇ ଭାଷା ଶିଖିଥିବା ଲୋକ ଖୁବ୍ କ୍ୱଚିତ୍ ଦେଖାଯାନ୍ତି । ମୁଁ ବ୍ଲେଫୁସ୍କୁର ରାଷ୍ଟ୍ରଦୂତଙ୍କ ସହ କଥାବାର୍ତ୍ତା ହେଲାବେଳେ ଏହିପରି ଜଣେ ଦୋଭାଷୀର ସାହାଯ୍ୟ ନେଇଥିଲି ।

ଲୋକମାନଙ୍କର ସାଧାରଣ ଉଚ୍ଚତା ଛଅ ଇଞ୍ଚରୁ କମ୍ । ଜୀବଜନ୍ତୁମାନେ ସେହି ଅନୁପାତରେ ଛୋଟ । ଗଛଲତାମାନେ ମଧ୍ୟ ଆମ ଦେଶର ଗଛଲତା ତୁଳନାରେ ସେହିପରି ଛୋଟ । ସବୁଠାରୁ ଉଚ୍ଚ ଘୋଡ଼ା ୪।୫ ଇଞ୍ଚରୁ ବେଶୀ ନୁହେଁ । ମେଣ୍ଢା ଛେଳିମାନେ ପ୍ରାୟ ଦେଢ଼ ଇଞ୍ଚ ଉଚ୍ଚ । ସେଦେଶର ଅନେକ ଛୋଟ

ଜୀବ ମୋ ଅଖିକୁ ପ୍ରାୟ ଦେଖାଯାନ୍ତି ନାହିଁ । କିନ୍ତୁ ସେ ଦେଶର ଲୋକଙ୍କ ଦୃଷ୍ଟିଶକ୍ତିକୁ ଭଗବାନ୍ ଏପରି ଗଢ଼ିଛନ୍ତି ଯେ ସେମାନେ ଏସବୁ ସ୍ପଷ୍ଟ ଦେଖିପାରନ୍ତି । ଥରେ ଗୋଟିଏ ଝିଅ ଛୁଞ୍ଚିରେ ସୂତା ଭର୍ତ୍ତି କରୁଥିଲା । ମୋତେ ତାର ଛୁଞ୍ଚି ବା ସୂତା କିଛି ଦେଖାଯାଉ ନ ଥିଲା ।

ସେଦେଶ ଜଙ୍ଗଲରେ ସବୁଠାରୁ ବଡ଼ ଗଛର ଉଚ୍ଚତା ସାତ ଫୁଟ ହେବ । ଫଳପରିବା ଗଛସବୁ ସେହି ଅନୁପାତରେ ଛୋଟ । ପାଠକଙ୍କ ଅନୁମାନଉପରେ ସେସବୁ ଛାଡ଼ିଦେବା ଉଚିତ ମନେ କରୁଛି ।

ସେଦେଶରେ ନାନାପ୍ରକାର ବିଦ୍ୟାର ଚର୍ଚ୍ଚା ଅଛି । ସେମାନଙ୍କ ଲିଖନ ପ୍ରଣାଳୀ ବିଚିତ୍ର । ଆମ୍ଭେମାନେ ବାଁରୁ ଡାହାଣକୁ ଲେଖୁଁ, ଆରବର ଲୋକେ ଡାହାଣରୁ ବାଁକୁ ଲେଖନ୍ତି, ଚୀନ ଦେଶରେ ଉପରୁ ତଳକୁ ଲେଖାଯାଏ; କିନ୍ତୁ ଲିଲିପୁଟର ଲୋକେ କଣରୁ କଣ ଲେଖିଯାନ୍ତି ।

ଆଇନ ଅନୁସାରେ ଚୋରି ଅପେକ୍ଷା ଠକାମି ଗୁରୁତର ଅପରାଧ । ସେମାନେ ମନେ କରନ୍ତି ଯେ ନିଜେ ସାବଧାନ ରହିଲେ ଚୋରଠାରୁ ରକ୍ଷା ମିଳିପାରେ; କିନ୍ତୁ ସାଧୁଲୋକେ ସହଜରେ ଠକାମିରେ ପଡ଼ିପାରନ୍ତି । ତେଣୁ କେହି ଠକାମି କଲେ ତାକୁ ପ୍ରାଣଦଣ୍ଡ ଦିଆଯାଏ ।

ସରକାରୀ ଚାକିରିରେ ନିଯୁକ୍ତବେଳେ ବିଦ୍ୟା ଅପେକ୍ଷା ସଚ୍ଚରିତ୍ର ଉପରେ ବେଶୀ ଦୃଷ୍ଟି ଥାଏ । ସେମାନଙ୍କର ବିଶ୍ୱାସ, ସାଧାରଣ କାର୍ଯ୍ୟ ଚଳାଇବା ପାଇଁ ଅସାଧାରଣ ବୁଦ୍ଧିର ଆବଶ୍ୟକତା ନାହିଁ । ବିଶେଷତଃ ଗୋଟାଏ ଯୁଗଭିତରେ ଦୁଇ ତିନି ଜଣ ଅସାଧାରଣ ବୁଦ୍ଧିସମ୍ପନ୍ନ ଲୋକ ମିଳିବେ କି ନା ସନ୍ଦେହ । ସତ୍ୟ,

ନ୍ୟାଯ୍ୟ ପ୍ରଭୃତି କେତୋଟି ଗୁଣ ଥିଲେ ଅଭିଜ୍ଞତାବଳରେ ଯେ କେହି ଯେକୌଣସି ସାଧାରଣ କାର୍ଯ୍ୟ ଚଳାଇପାରିବ । କେବଳ କେତେକ ବିଶିଷ୍ଟ କାର୍ଯ୍ୟପାଇଁ ବୈଷୟିକ ଶିକ୍ଷାର ଆବଶ୍ୟକତା ଅଛି ।

କୃତଘ୍ନତା ସେଦେଶରେ ଗୋଟିଏ ଘୃଣ୍ୟ ଅପରାଧ; ସେଥିପାଇଁ ମୃତ୍ୟୁ-ଦଣ୍ଡର ବ୍ୟବସ୍ଥା ଅଛି । ସେମାନଙ୍କ ମତରେ ଯେଉଁ ଲୋକ ନିଜର ଉପକାରୀର କ୍ଷତି କରିପାରେ, ସେ ନିଶ୍ଚୟ ସର୍ବସାଧାରଣଙ୍କର ଶତ୍ରୁ । ଏପରି ଲୋକ ସମାଜରେ ରହିବା ଅନୁଚିତ ।

ଥରେ ସ୍ୱୟଂ ମହାରାଜା, ମହାରାଣୀ ଓ ରାଜପୁତ୍ର, ରାଜକନ୍ୟା-ମାନେ ମୋ ସଙ୍ଗେ ଭୋଜନ କରି ମୋତେ ଅନୁଗୃହୀତ କରିଥିଲେ । ମୁଁ ନିଜ ବ୍ୟବହାରପାଇଁ ଯଥାତଥାଭାବରେ ଖଣ୍ଡିଏ ଟେବୁଲ ଓ ଖଣ୍ଡିଏ ଚୌକି ତିଆରି କରିଥିଲି । ରାଜପରିବାରଙ୍କୁ ସେମାନଙ୍କ ରକ୍ଷକ ସହିତ ମୋ ଟେବୁଲଉପରେ ରଖିଦେଲି । ଅର୍ଥମନ୍ତ୍ରୀ ଫ୍ଲିମନାପ ସେଠାରେ ଉପସ୍ଥିତ ଥାଆନ୍ତି । ସେଦିନ ରାଜପରିବାରଙ୍କୁ ସନ୍ତୁଷ୍ଟ କରିବାପାଇଁ ମୁଁ ଅନ୍ୟ ଦିନ ଅପେକ୍ଷା କିଛି ବେଶି ଖାଇଥିଲି । କିନ୍ତୁ ଏହାର ପରିଣାମ ମୋ ପକ୍ଷରେ କ୍ଷତିକାରକ ହୋଇଥିଲା ।

ପରେ ଅର୍ଥମନ୍ତ୍ରୀ ମହାରାଜାଙ୍କୁ ବୁଝାଇ ଦେଇଥିଲେ ଯେ ମୋର ଖାଦ୍ୟ ଯୋଗାଇବାରେ ରାଜସରକାରଙ୍କର ଦଶ ଲକ୍ଷ ସ୍ୱର୍ଣ୍ଣମୁଦ୍ରା ବ୍ୟୟ ହେଲାଣି । ଫଳରେ ରାଜକୋଷ ଶୂନ୍ୟ ହେବାକୁ ବସିଲାଣି । ତେଣୁ ଯେତେ ଶୀଘ୍ର ମୋତେ ବିଦାୟ ଦିଆ ଯାଇପାରେ, ସେତେ ମଙ୍ଗଳ ।

— ୧୩ —

ଲିଲିପୁଟ ଛାଡ଼ିବାର ଠିକ୍ ପୂର୍ବରୁ ମୋ ବିରୁଦ୍ଧରେ ଗୋଟାଏ ପ୍ରକାଣ୍ଡ ଷଡ଼୍‌ଯନ୍ତ୍ର ହୋଇଥିଲା । ଏଠାରେ ସେହି କଥା କୁହାଯାଉଛି ।

ମୁଁ ରାଜା ମହାରାଜା ଓ ରାଜ୍ୟଶାସନ ପ୍ରଭୃତି ବିଷୟରେ ଅନେକ କଥା ପଢ଼ିଥିଲି ଓ ଶୁଣିଥିଲି । କିନ୍ତୁ ଏସବୁରେ ମୋର ପ୍ରତ୍ୟକ୍ଷ ଅନୁଭୂତି ନ ଥିଲା । ଯାହା ହେଉ ସୁଦୂର ବିଚିତ୍ର ରାଜ୍ୟରେ ରାଜା-ମାନଙ୍କ ନିକଟ-ସମ୍ପର୍କରେ ଆସିବାର ଫଳ ଜାଣି ପାରିଥିଲି ।

ମୁଁ ବ୍ଲେଫୁସ୍କୁ ଯିବାପାଇଁ ଯୋଗାଡ଼ କରୁଥିବା ସମୟରେ ଦିନେ ରାତିରେ ପଦସ୍ଥ ଉଚ୍ଚକର୍ମଚାରୀ ହଠାତ୍ ମୋ ଘରେ ଉପସ୍ଥିତ ହେଲେ । ଏହି ଭଦ୍ରବ୍ୟକ୍ତି ଥରେ ମହାରାଜାଙ୍କର ବିରାଗ-ଭାଜନ ହୋଇ ମହାବିପଦରେ ପଡ଼ିଥିଲେ । ମୁଁ ସାହାଯ୍ୟ କରି ତାଙ୍କୁ ସେଥିରୁ ମୁକ୍ତ କରିଥିଲି । ତେଣୁ ସେ ମୋପ୍ରତି କୃତଜ୍ଞ ଥିଲେ । ତାଙ୍କୁ ମୋ କୋଟପକେଟରେ ପୂରାଇ ଭିତରକୁ ଗଲି । ଜଣେ ବିଶ୍ୱାସୀ ଚାକରକୁ କହିଲି ଯେ ଅନ୍ୟ କେହି ଯେପରି ଭିତରକୁ ନ ଯାନ୍ତି । ଘରେ ତାଙ୍କୁ ଟେବୁଲଉପରେ ବସାଇ ମୁଁ ନିଜେ ବସିଲି । ଏପରି ଭାବରେ ତାଙ୍କ ଆଗମନର କାରଣ ପଚାରିବାରୁ ସେ ମୋତେ ଧୈର୍ଯ୍ୟ ଧରି ଶୁଣିବାକୁ କହିଲେ ।

ସେ ଯାହା କହିଲେ, ତାର ମର୍ମ ହେଉଛି ଏହିପରି —

"ତୁମେ ଜାଣ ଯେ ଆମ ନୌସେନାପତି ତୁମର ପ୍ରଧାନ ଶତ୍ରୁ; ବିଶେଷତଃ ତୁମେ ବ୍ଲେଫୁସ୍କୁର ନୌବାହିନୀକୁ ଏକାକୀ ଟାଣି ଆଣିବାଦ୍ୱାରା ନୌସେନାପତି ଭାବରେ ତାଙ୍କର ମହତ୍ତ୍ୱ କମି-ଯାଇଛି । ତୁମର ଅନ୍ୟ ଜଣେ ଶତ୍ରୁ ହେଉଛନ୍ତି ଅର୍ଥମନ୍ତ୍ରୀ ଫ୍ଲିମନାପ । ଏ ଦୁହେଁ ମିଳି ତୁମ ବିରୁଦ୍ଧରେ ପ୍ରଧାନ ବିଚାରପତିଙ୍କ ନିକଟରେ

ତୁମକୁ ଦେଶଦ୍ରୋହ ଓ ଅନ୍ୟାନ୍ୟ ଅପରାଧରେ ଅଭିଯୁକ୍ତ କରି-
ଅଛନ୍ତି । ତୁମେ ମୋର ଅନେକ ଉପକାର କରିଛ । ମୁଁ କୌଶଳ
କରି ଅଭିଯୋଗମାନଙ୍କର ଏକ ନକଲ ଆଣିଛି । ଏହା ଜଣା
ପଡ଼ିଲେ ମୋତେ ପ୍ରାଣଦଣ୍ଡ ହୋଇପାରେ; କିନ୍ତୁ ତୁମପରି ଉପକାରୀ
ବନ୍ଧୁ ପାଇଁ ଏହା ନ କରନ୍ତି କିପରି ?”

ସେ ମୋତେ ଅଭିଯୋଗର ନକଲ ଦେଖାଇଲେ ।

ମନୁଷ୍ୟପର୍ବତ ବିରୁଦ୍ଧରେ ଦେଶଦ୍ରୋହ ଅପରାଧର ଅଭିଯୋଗ

ଦଫା ୧—ପୂର୍ବୋଲ୍ଲିଖିତ ମନୁଷ୍ୟପର୍ବତ ବ୍ଲେଫୁସ୍କୁର ନୌ-
ବାହିନୀକି ସରକାରୀ ପୋତାଶ୍ରୟକୁ ଆଣିବାପରେ ଶ୍ରୀହଜୁର ଆଦେଶ
କରିଥିଲେ ଯେ, ସେ ଉକ୍ତ ବ୍ଲେଫୁସ୍କୁ ରାଜ୍ୟର ଅନ୍ୟ ସମସ୍ତ ଜାହାଜ
ସେହିପରି ଆଣିବ ଓ ଫଳରେ ଉକ୍ତ ରାଜ୍ୟ ଲିଲିପୁଟର ଗୋଟିଏ
ପ୍ରଦେଶରୂପେ ଜଣେ ରାଜପ୍ରତିନିଧିଙ୍କଦ୍ୱାରା ଶାସିତ ହେବ ଏବଂ
ସେଠାରେ ଆଶ୍ରୟ ନେଇଥିବା ଲମ୍ବାଗୋଇଆମାନଙ୍କୁ ଓ ସେମାନଙ୍କର
ସମର୍ଥକମାନଙ୍କୁ ଧ୍ୱଂସ କରାଯିବ । କିନ୍ତୁ ଉକ୍ତ ମନୁଷ୍ୟପର୍ବତ ରାଜ-
ସରକାରଙ୍କର ବିରୋଧୀ ହୋଇ ବିବେକର ବାହାନାରେ ଏହା
ନକରି କହିଲା ଯେ ସେ ଗୋଟାଏ ନିରୀହ ଜାତିର ସ୍ୱାଧୀନତା ନଷ୍ଟ
କରିବ ନାହିଁ ।

ଦଫା ୨—ଯେତେବେଳେ ବ୍ଲେଫୁସ୍କୁର ରାଷ୍ଟ୍ରଦୂତମାନେ ସନ୍ଧି
ପ୍ରାର୍ଥନା କରି ଆସିଲେ, ସେତେବେଳେ ଉକ୍ତ ମନୁଷ୍ୟପର୍ବତ ଯଦ୍ୟପି
ଜାଣିଥିଲା ଯେ ସେମାନେ ଆମ୍ଭ ଶତ୍ରୁରାଜ୍ୟର କର୍ମଚାରୀ ଓ ଅଳ୍ପକାଳ
ପୂର୍ବେ ଆମ ସରକାର ବିରୁଦ୍ଧରେ ଯୁଦ୍ଧ କରିଥିଲେ, ତଥାପି
ସେମାନଙ୍କୁ ସାହାଯ୍ୟ ଦେଇଛି, ଉତ୍ତେଜନା ଦେଇଛି ଓ ସେମାନଙ୍କୁ
ସନ୍ତୁଷ୍ଟ କରିବାକୁ କ୍ରୀଡ଼ାକୌତୁକ ଦେଖାଇଅଛି । ଏହା ତାହା
ପକ୍ଷରେ ଦେଶଦ୍ରୋହ ।

ଦଫା ୩—ମହାରାଜାଙ୍କ ମୌଖିକ ଅନୁମତିର ସୁଯୋଗ ନେଇ ତକ୍ତ ମନୁଷ୍ୟପର୍ବତ ବ୍ଲେଫ୍ସ୍କୁକୁ ନୌଯାତ୍ରା କରିବାର ଅଯୋଜନ କରୁଅଛି । ଏପରି କରିବା କୌଣସି ରାଜଭକ୍ତ ପ୍ରଜା ପକ୍ଷରେ ଘୋର ଅନ୍ୟାୟ । ଅଳ୍ପକାଳ ପୂର୍ବେ ଯେଉଁ ରାଜ୍ୟ ଆମର ଶତ୍ରୁଥାଇ ଆମ ବିରୁଦ୍ଧରେ ପ୍ରକାଶ୍ୟଯୁଦ୍ଧ କରୁଥିଲା, ଏହାଦ୍ୱାରା ତାକୁ ସେ ସାହାଯ୍ୟ କରୁଅଛି ।

ଏହାଛଡ଼ା ଆଉ କେତେକ ଦଫା ଥିଲେହେଁ ଏଗୁଡ଼ିକ ପ୍ରଧାନ । ଏହି ଅଭିଯୋଗର ବିଚାରବେଳେ ପରିଷଦରେ ମହାରାଜା ତୁମର ଦେଶପ୍ରତି କାର୍ଯ୍ୟାବଳୀର ଉଲ୍ଲେଖ କରି ତୁମ ସମ୍ବନ୍ଧରେ ତାଙ୍କର ଉଚ୍ଚ ଧାରଣାର ସୂଚନା ଦେଇଥିଲେ ।

ଅର୍ଥମନ୍ତ୍ରୀ ଓ ନୌସେନାପତି ପ୍ରସ୍ତାବ କଲେ ଯେ ତୁମ ଘରେ ନିଆଁ ଲଗାଇ ତୁମକୁ ମାରିଦେବା ଉଚିତ ଦଣ୍ଡ ହେବ । କେହି ପ୍ରସ୍ତାବ କଲେ ଯେ ସେନାପତି କୋଡ଼ିଏ ହଜାର ସୈନ୍ୟ ନେଇ ବିଷାକ୍ତ ଶରଦ୍ୱାରା ତୁମକୁ ମାରିଦିଅନ୍ତୁ । ଆଉ କେହି କହିଲେ, ତୁମ ଚାକରମାନଙ୍କୁ ଗୋପନରେ ପରାମର୍ଶ ଦିଆଯିବ ଯେ ସେମାନେ ତୁମର ପୋଷାକରେ ଏକପ୍ରକାର ବିଷାକ୍ତଦ୍ରବ୍ୟ ବୋଳି-ଦେବେ । ତାକୁ ପିନ୍ଧିଲେ ତୁମେ ବଡ଼ କଷ୍ଟ ପାଇ ପ୍ରାଣ ହରାଇବ । ଏହିପରି ପ୍ରାୟ ସବୁ ସଭ୍ୟ ତୁମର ବିରୋଧୀ ଥିଲେ । କିନ୍ତୁ ତୁମର ଜୀବନ ରକ୍ଷା କରିବା ରାଜାଙ୍କର ଇଚ୍ଛା ଥିଲା । ଶେଷରେ ଜଣେ ସଭ୍ୟ ତୁମ ପକ୍ଷରେ ଦି ପଦ କହିଲେ ।

ଘରୋଇ ବିଭାଗର ପ୍ରଧାନ ସେକ୍ରେଟରୀ ରେଲଡ୍ରେସଲ୍ ତୁମର ଜଣେ ପ୍ରକୃତ ବନ୍ଧୁ । ମହାରାଜା ତାଙ୍କ ମତ ପଚାରିବାରୁ ସେ କହିଲେ, "ମନୁଷ୍ୟପର୍ବତର ଅପରାଧ ଗୁରୁତର, ସନ୍ଦେହ ନାହିଁ । କିନ୍ତୁ ମହାରାଜା ହେଉଛନ୍ତି ଦୟାର ଅବତାର । କ୍ଷମା ଗୁଣ ନିମନ୍ତେ

ସାର ପୃଥିବୀରେ ମହାରାଜାଙ୍କର ଖ୍ୟାତି ଅଛି । ମୋ ସହିତ ମନୁଷ୍ୟ-ପର୍ବତର ବନ୍ଧୁତା ଅଛି, ସମସ୍ତଙ୍କୁ ଜଣା । ତଥାପି ଶ୍ରୀହଜୁରଙ୍କ ଆଦେଶରେ ମୋର ସ୍ୱାଧୀନ ମତ ପ୍ରକାଶ କରୁଛି । ଶ୍ରୀହଜୁରଙ୍କର ଅସୀମ ଦୟା ଓ ମନୁଷ୍ୟପର୍ବତର ଦେଶପ୍ରତି ପୂର୍ବ କାର୍ଯ୍ୟାବଳୀ ଦୃଷ୍ଟିରୁ ତାହାର ଜୀବନ ରକ୍ଷା କରାଯାଉ । ଯଦି ଶ୍ରୀହଜୁର ତାର ପ୍ରାଣଦଣ୍ଡ ଆଦେଶ ନ ଦେଇ ତାର ଆଖି ଦୁଇଟି ନଷ୍ଟ କରିବାର ଆଦେଶ ଦିଅନ୍ତି, ତେବେ ନ୍ୟାୟର ମର୍ଯ୍ୟାଦା ରହିବ—ତା ସଙ୍ଗେ ମହାରାଜାଙ୍କର ଦୟା ପ୍ରକାଶ ପାଇବ ।"

ଆହୁରି ସେ କହିଲେ "ଆଖି ଦୁଇଟି ନଷ୍ଟ କରିଦେବାଦ୍ୱାରା ତୁମ୍ଭର କିଛି ଅସୁବିଧା ହେବ ନାହିଁ । ଅନ୍ଧ ହୋଇ ମଧ୍ୟ ତୁମ୍ଭେ ଦେଶର ବହୁତ ସାହାଯ୍ୟ କରିପାରିବ । ଅନ୍ଧମାନେ ବେଶୀ ସାହସୀ ହୁଅନ୍ତି; କାରଣ ସେମାନେ ଆଗର ବିପଦ ଦେଖିପାରନ୍ତି ନାହିଁ । ଶତ୍ରୁର ଜାହାଜଗୁଡ଼ିକ ଆଣିଲବେଳେ ତୁମ୍ଭଙ୍କୁ ଆଖିଲାଗି କେତେ ଚିନ୍ତା କରିବାକୁ ପଡ଼ିଛି । ତୁମ୍ଭ ପକ୍ଷରେ ଆଖିର କୌଣସି ଦରକାର ନାହିଁ । ମନ୍ତ୍ରୀମାନେ ଦେଖିବା କାମ ତୁମପାଇଁ କରିଦେବେ । ବଡ଼ ବଡ଼ ରାଜାମାନେ କଅଣ ନିଜେ ଦେଖନ୍ତି ? ସେମାନେ ତ ପୁଣି ଅନ୍ୟମାନଙ୍କ ଆଖିରେ ଦେଖି ଏଡ଼େ ଏଡ଼େ ରାଜ୍ୟ ଚଳାଉଛନ୍ତି ?"

ଏ ପ୍ରସ୍ତାବଟା ଅନେକଙ୍କୁ ଭଲ ଲାଗିଲା ନାହିଁ । ନୌସେନାପତି ରାଗରେ ଜଳିପଡ଼ି କହିଲେ, "ପ୍ରଧାନ ସେକ୍ରେଟେରୀ ଜଣେ ଦେଶ-ଦ୍ରୋହୀର ଜୀବନରକ୍ଷାପାଇଁ କହୁଥିବା ଆଶ୍ଚର୍ଯ୍ୟର କଥା । ସେ ଦେଶ ପାଇଁ କିଛି କରିଛି ସତ୍ୟ, ଦେଶସେବକ ଦେଶଦ୍ରୋହ କଲେ ତାର ଅପରାଧ ଆହୁରି ଗୁରୁତର । ଯେଉଁ ବଳ ପ୍ରୟୋଗ କରି ସେ ଶତ୍ରୁ ଜାହାଜକୁ ଟାଣି ଆଣିଥିଲା, ସେହି ବଳରେ ସେ ପୁଣି ସେଗୁଡ଼ିକୁ

ବ୍ଲେଫୁସ୍କୁକୁ ନେଇଯିବାରେ କିଛି ଅସମ୍ଭବ ନାହିଁ । ମୋର ବିଶ୍ୱାସ, ସେ ଜଣେ ଲମ୍ବବାଗିଅ । ତା ମନଭିତରେ ଲମ୍ବବାଗିଅଙ୍କ ପ୍ରତି ସହାନୁଭୂତି ଅଛି । ଅପରାଧ ପ୍ରଥମେ ମନରେ ଦେଖାଦେଇ ପରେ କାମରେ ପ୍ରକାଶପାଏ । ଅତଏବ ମୋ ମତରେ ଏ ଦେଶଦ୍ରୋହୀଙ୍କୁ ପ୍ରାଣଦଣ୍ଡ ହେଉ ।"

ଅର୍ଥମନ୍ତ୍ରୀ ନୌସେନାପତିଙ୍କ ସହିତ ଏକମତ ହୋଇ କହିଲେ, "ଏହି ମନୁଷ୍ୟପର୍ବତକୁ ପୋଷିବାଦ୍ୱାରା ରାଜକୋଷ ଅସି ଶୂନ୍ୟ ହେବାକୁ ବସିଲଣି । ଅଖି ଦୁଇଟି ନଷ୍ଟ କରିଦେଲେ ଏହାର ପ୍ରତିକାର ହେବ ନାହିଁ । ଯେତେବେଳେ ସଭ୍ୟମାନେ ଓ ଶ୍ରୀମହାରାଜ ତାର ଅପରାଧ ବିଷୟରେ ନିଃସନ୍ଦେହ, ତାକୁ ପ୍ରାଣଦଣ୍ଡ ଦିଆଯାଉ ।"

ମାତ୍ର ପ୍ରାଣଦଣ୍ଡ ଦେବା ଶ୍ରୀମହାରାଜାଙ୍କର ଇଚ୍ଛା ନୁହେଁ । ତେଣୁ ସେ କହିଲେ, "ଅମ୍ଭେ ଦେଖୁଛୁଁ ଯେ, କେବଳ ଅଖି ଦୁଇଟି ନଷ୍ଟ କରିଦେଲେ ଦୋଷର ଉପଯୁକ୍ତ ଦଣ୍ଡ ହେବ ନାହିଁ ବୋଲି ଅଧିକ ସଭ୍ୟଙ୍କର ମତ । ତାହାହେଲେ ଅଉ କେତେକ ଦଣ୍ଡ ପରେ ଦିଆଯାଇପାରେ ।"

ତୁମର ବନ୍ଧୁ ପ୍ରଧାନ ସେକ୍ରେଟେରୀ ଅର୍ଥମନ୍ତ୍ରୀଙ୍କ ଅପତ୍ତିର ଉତ୍ତର ଦେଇ ପୁଣି କହିଲେ, "ମଣିଷପର୍ବତକୁ ପୋଷିବାରେ ଯେ ବହୁତ ଖରଚ ହେଉଛି ତା ମୁଁ ସ୍ୱୀକାର କରୁଛି । ଏ ବିଷୟରେ ଅର୍ଥମନ୍ତ୍ରୀଙ୍କ ସହିତ ମୁଁ ଏକମତ । କିନ୍ତୁ ଏହାର ପ୍ରତିକାରସ୍ୱରୂପ କମେ ତାର ଖାଦ୍ୟପେୟ କମାଇ ଦିଆଯାଇପାରେ । ଏପରି କଲେ ସେ ଶୁଖି ଶୁଖି କମେ ଦୁର୍ବଳ ହୋଇଯିବ ଓ କେତେକ ମାସପରେ ବଳେ ବଳେ ମରିଯିବ । କିନ୍ତୁ ସେତେବେଳକୁ ସେ ପ୍ରାୟ ଅଧେ ଶୁଖି ଯାଇଥିବ । ତେଣୁ ତା ମୃତ୍ୟୁର ଯୋଗେ ଦେଶର ବିଶେଷ କ୍ଷତି

ହେବ ନାହିଁ । ଅଠ ଦଶ ହଜାର ଲୋକ ୩।୪ ଦିନଭିତରେ ତାକୁ ହାଣି ଗାଡ଼ିରେ ଲଦି ଦୂରରେ ଫିଙ୍ଗି ଦେଇପାରିବେ । ଅବଶ୍ୟ ହାଡ଼ଗୁଡ଼ିକ ଗୋଟିଏ ପାହାଡ଼ ପରି ଜମି ରହିବ । ମାତ୍ର ତାଦ୍ୱାରା ରୋଗ ବ୍ୟାପିପାରିବ ନାହିଁ; ବରଂ ହାଡ଼ର ପାହାଡ଼ଟି ଆମର ବଂଶଧରମାନଙ୍କ ପକ୍ଷରେ ଗୋଟିଏ ସ୍ମୃତିଚିହ୍ନ ହୋଇ ରହିବ ।”

ଯାହାହେଉ, ତୁମର ଏହି ବନ୍ଧୁଙ୍କ ଚେଷ୍ଟାରେ ସବୁ ସିଦ୍ଧାନ୍ତ ହୋଇଯାଇଛି । ତୁମର ଖାଦ୍ୟପେୟ କ୍ରମେ କମାଇଦେବା କଥା ‘ଅତ୍ୟନ୍ତ ଗୋପନୀୟ’ ରଖା ହୋଇଛି । କିନ୍ତୁ ତୁମର ଆଖି ନଷ୍ଟ କରିଦେବା ଆଦେଶରେ ମହାରାଜ ମଞ୍ଜୁରି ଦେଇଛନ୍ତି ।

ଠିକ ତିନି ଦିନ ପରେ ପ୍ରଧାନ ସେକ୍ରେଟରୀ ତୁମ ପାଖକୁ ଆସି ଅଭିଯୋଗର ଦଫାଗୁଡ଼ିକ ପଢ଼ି ତୁମକୁ ଶୁଣାଇଦେବେ ଏବଂ ରାଜ-ସଭାର ପରାମର୍ଶରେ ତୁମପ୍ରତି ବିଶେଷ ଅନୁଗ୍ରହ କରି ତୁମର କେବଳ ଆଖି ଦୁଇଟିକୁ ଫୁଟାଇଦେବା ଆଦେଶ କରିଥିବା ଜଣାଇଦେବେ । ମହାରାଜାଙ୍କର ପୂର୍ଣ୍ଣ ବିଶ୍ୱାସ, ତୁମେ ଏହି ଦଣ୍ଡକୁ ଆନନ୍ଦରେ ଗ୍ରହଣ କରିବ । ଚକ୍ଷୁ ଦୁଇଟି ନଷ୍ଟ କଲାବେଳେ ତୁମର କୌଣସି କଷ୍ଟ ହେବ ନାହିଁ । ରାଜସରକାରର ବାରଜଣ ବିଜ୍ଞ ଚିକିତ୍ସକ ଏହି କାର୍ଯ୍ୟ କରିବେ; ତୁମେ ଶୋଇରହିବ । ଚିକିତ୍ସକମାନେ ଶର ମାରି ଆଖିର ଡୋଳା ଦୁଇଟି ନଷ୍ଟ କରିଦେବେ ।

ମୁଁ ବ୍ୟକ୍ତିଗତ ଭାବରେ ତୁମର ବନ୍ଧୁରୂପେ ଏଠାକୁ ଆସିଥିଲି । ମୁଁ ଯାହା ଜାଣିଥିଲି ସବୁ କହିଲି, ଏବେ ଯାଉଛି ।

ସେ ଚାଲିଗଲେ । ମୁଁ ଏକାକୀ କିଛି ସମୟ ଚିନ୍ତା କଲି । ମନଟା ବଡ଼ ଖରାପ ଲାଗୁଥାଏ । ଶେଷରେ ଭାବିଲି—ମୁଁ ବ୍ଲେଫୁସ୍କୁ ଯିବା ନିମନ୍ତେ ମହାରାଜାଙ୍କର ଅନୁମତି ପାଇଛି । ଆଗେ ସେଠାକୁ ଚାଲିଯାଏଁ । ପରେ ଯାହା ହେବାର ହେବ ।

ତା ପରଦିନ ସକାଳେ ମୁଁ ପ୍ରଧାନ ସେକ୍ରେଟରୀଙ୍କ ପାଖକୁ ମୋର ବ୍ଲେଫ୍ୟୁସ୍କୁ ଯିବା ବିଷୟରେ ଖଣ୍ଡେ ଚିଠି ଲେଖିଲି । ଉତ୍ତରର ଅପେକ୍ଷା ନ କରି ଗୋଟିଏ ଜାହାଜରେ ମୋର ଲୁଗାପଟା ଲଦି ସମୁଦ୍ରରେ ପଶିଲି । ଜାହାଜଟିକୁ ଟାଣି ଟାଣି ଚାଲିଥାଏଁ । ଅଳ୍ପ ଦୂର ପହଁରିବାକୁ ପଡ଼ିଥିଲା । ଅଧଘଣ୍ଟାକ ଭିତରେ ବ୍ଲେଫ୍ୟୁସ୍କୁର ପ୍ରଧାନ ବନ୍ଦର ନିକଟରେ ପହଞ୍ଚିଗଲି ।

ଦୁଇ ଜଣ ଲୋକ ମୋତେ ବାଟ ଦେଖାଇଦେଲେ । ସେମାନଙ୍କୁ ମୁଁ ହାତରେ ଧରି ଚାଲିଲି । ଶେଷରେ ରାଜପ୍ରାସାଦଠାରୁ ଦୁଇଶ ଗଜ ଦୂରରେ ରହି ମୁଁ ପହଞ୍ଚିଥିବା ସମ୍ବାଦ ପଠାଇଲି । ଅଧଘଣ୍ଟାକ ମଧ୍ୟରେ ଉତ୍ତର ମିଳିଲା ଯେ ସ୍ୱୟଂ ମହାରାଜା, ମହାରାଣୀ, ରାଜପରିବାର ଓ ବଡ଼ ବଡ଼ ରାଜକର୍ମଚାରୀମାନେ ମୋତେ ଅଭ୍ୟର୍ଥନା କରିବାକୁ ଆସୁଅଛନ୍ତି ।

ମୁଁ ପ୍ରାୟ ଶହେ ଗଜ ଆଗେଇଗଲି । ଯଥାସମୟରେ ମହାରାଜା ପ୍ରଭୃତି ଆଡ଼ମ୍ବର ସହକାରେ ଆସି ପହଞ୍ଚିଲେ । ମୁଁ ସେମାନଙ୍କୁ ଯଥାବିଧି ସମ୍ମାନ ଦେଖାଇଲି ।

ମୁଁ କହିଲି, "ମହାରାଜ, ଆପଣଙ୍କ ପରି ଜଣେ ପ୍ରବଳ ପରାକ୍ରାନ୍ତ ଉଦାରହୃଦୟ ରାଜାଙ୍କର ସାକ୍ଷାତ ପାଇବା ମୋର ସୌଭାଗ୍ୟ । ମୁଁ ଆପଣଙ୍କ ରାଷ୍ଟ୍ରଦୂତମାନଙ୍କୁ ଯେଉଁ ସ୍ୱୀକୃତି ଦେଇଥିଲି, ତାହା ପାଳନ କରି ଏଠାକୁ ଆସିଅଛି । ମୋର ନିଜ ମହାରାଜାଙ୍କ ପ୍ରତି ବିଶ୍ୱାସଘାତକତା ନ କରି ଯାହା କିଛି ମୁଁ କରିପାରେଁ, ତା ଆପଣଙ୍କ ନିମନ୍ତେ କରିବାକୁ ପ୍ରସ୍ତୁତ ।"

ବ୍ଲେଫ୍ୟୁସ୍କୁରେ ମୋର ରହିବାଯୋଗ୍ୟ ଘର କିମ୍ବା ବିଛଣା ମିଳିବାର କୌଣସି ଆଶା ନ ଥିଲା; ତେଣୁ ମୋତେ ତଳେ

ଶୋଇବାକୁ ହେଉଥିଲା ଏବଂ ଦିନର ଖରା ଓ ରାତିର ଛାକର ମଧ୍ୟ ସହିବାକୁ ପଡ଼ୁଥିଲା । କିନ୍ତୁ ମହାରାଜାଙ୍କର ବ୍ୟବହାର ଦେଖି ମୁଁ ଏକାବେଳେ ମୁଗ୍ଧ ହୋଇଯାଇଥିଲି ।

— ୧୪ —

ତିନି ଦିନ ଏହିପରି କଟାଇଲି । ଦିନେ ମୁଁ ରାଜ୍ୟର ଉତ୍ତର-ପୂର୍ବ ଅଞ୍ଚଳକୁ ବୁଲି ଯାଇଥିଲି । ସମୁଦ୍ରକୂଳଠାରୁ ପ୍ରାୟ ତିନି ମାଇଲ ଦୂରରେ ଗୋଟିଏ ଓଲଟି ପଡ଼ିଥିବା ନୌକାପରି ପଦାର୍ଥ ଦେଖାଗଲା । ମୁଁ ଜୋତା ପ୍ରଭୃତି କାଢ଼ି ପାଣିରେ ପଶି କିଛି ଦୂର ଗଲି । ଦେଖିଲି ଯେ ସେହି ପଦାର୍ଥଟି ପ୍ରକୃତରେ ଗୋଟିଏ ନୌକା ଏବଂ ଲହରୀ ଯୋଗେ ମୋ ଅଞ୍ଚଳକୁ ଭାସି ଭାସି ଆସୁଛି । ବୋଧ ହୁଏ ଏହି ନୌକାଟି କୌଣସି ଜାହାଜରେ ଥିଲା । ଝଡ଼ ହେତୁ ଜାହାଜ ନଷ୍ଟ ହୋଇଛି ଓ ନୌକାଟି ଭାସି ଆସିଛି ।

ମୁଁ ମହାରାଜାଙ୍କୁ ତାଙ୍କ ଜାହାଜଗୁଡ଼ିକର ସାହାଯ୍ୟ ମାଗିଲି । ମହାରାଜ ଅନୁଗ୍ରହ କରି ୨୦ଟି ବଡ଼ ଜାହାଜ ଓ ତିନି ହଜାର ନାବିକ ଯୋଗାଇଦେଲେ । ଏମାନଙ୍କ ସାହାଯ୍ୟରେ ମୁଁ ସମୁଦ୍ରଭିତରେ ପଶି ସେହି ନୌକାଟିକୁ ଯଥାସମ୍ଭବ କୂଳକୁ ଆଣିଲି । ଦେଖିଲି ଯେ ନୌକାର ବିଶେଷ କ୍ଷତି ହୋଇ ନାହିଁ ।

ମୁଁ ମହାରାଜାଙ୍କୁ ଜଣାଇଲି ଯେ ଭଗବାନଙ୍କ ଦୟାରୁ ଗୋଟିଏ ନୌକା ବଳେ ବଳେ ଆସି ପହଞ୍ଚିଛି । ବୋଧ ହୁଏ ଏଥିରେ ଗଲେ ମୁଁ ପୁଣି ସ୍ୱଦେଶରେ ପହଞ୍ଚିପାରିବି । ମୋତେ ବିଦାୟ ଦିଅଯାଉ ।

ମୁଁ ଯେ ଲିଲିପୁଟରେ ଅଭିଯୁକ୍ତ ହୋଇଛି ଓ ମୋ ଉପରେ ଏପରି ଦଣ୍ଡର ବ୍ୟବସ୍ଥା ହେଉଛି, ସେସବୁ ବିଷୟ ବ୍ଲେଫୁସ୍କୁରେ ମୁଁ କାହାରି ଆଗରେ ପ୍ରକାଶ କରି ନ ଥିଲି । ପ୍ରକାଶ କରିବା ଦରକାର

ମଧ୍ୟ ନ ଥିଲି । ମୁଁ ଯାହା ଜାଣିଥିଲି, ତାହା କେବଳ ବ୍ୟକ୍ତିଗତ ଭାବରେ ଜଣେ ବନ୍ଧୁଙ୍କଠାରୁ । ସରକାରୀ ଭାବରେ ମୋତେ କିଛି ଜଣାଇ ଦିଆଯାଇ ନ ଥିଲା ।

ଏଥିମଧ୍ୟରେ ଲିଲିପୁଟରୁ ମୋ ସମ୍ବନ୍ଧରେ କୌଣସି ସମ୍ବାଦ ନ ଆସିବାର ଦେଖି ମୁଁ ଆଶ୍ଚର୍ଯ୍ୟ ହୋଇଥିଲି । ପରେ ମୁଁ ଖବର ପାଇଥିଲି ଯେ ପ୍ରଥମେ ଲିଲିପୁଟର ମହାରାଜା ମୋର ବ୍ଲେଫୁସ୍କୁ ଆସିବାରେ କିଛି ସନ୍ଦେହ କରି ନ ଥିଲେ; କିନ୍ତୁ ମୁଁ ବ୍ଲେଫୁସ୍କୁରେ ବେଶୀ ଦିନ ରହିବାରୁ ରାଜସ୍ୱମନ୍ତ୍ରୀଙ୍କ ସଙ୍ଗେ ପରାମର୍ଶ କରି ମୋ ବିରୁଦ୍ଧରେ ଥିବା ଦେଶଦ୍ରୋହମୂଳକ ଅଭିଯୋଗ ସହିତ ଜଣେ ଉଚ୍ଚ ରାଜକର୍ମଚାରୀଙ୍କୁ ବ୍ଲେଫୁସ୍କୁକୁ ପଠାଇଥିଲେ ।

ଉକ୍ତ ରାଜକର୍ମଚାରୀଙ୍କ ଦ୍ୱାରା ଲିଲିପୁଟର ମହାରାଜା ବ୍ଲେଫୁସ୍କୁର ରାଜାଙ୍କ ନିକଟକୁ ଜଣାଇ ଦେଇଥିଲେ ଯେ, ମୋର ଗୁରୁତର ଅପରାଧ ସତ୍ତ୍ୱେ ମୋପ୍ରତି ଦୟା ପ୍ରଦର୍ଶନ କରାଯାଇ କେବଳ ଚକ୍ଷୁ ଦୁଇଟି ନଷ୍ଟ କରିଦେବାର ଆଦେଶ ଦିଆଯାଇଅଛି । ଯଦି ମୁଁ ଦୁଇ ଘଣ୍ଟା ମଧ୍ୟରେ ଲିଲିପୁଟକୁ ଫେରି ନ ଯାଏଁ, ତେବେ ମୁଁ ରାଜଦଣ୍ଡରୁ ରକ୍ଷା ପାଇବାକୁ ପଳାଇ ଆସିଥିବା ପ୍ରମାଣିତ ହେବ । ତାହାହେଲେ ମୋର ନର୍ଡାକ୍ ଉପାଧି କାଢ଼ି ନିଆଯାଇ ମୋତେ ଦେଶଦ୍ରୋହୀ ବୋଲି ଘୋଷଣା କରାଯିବ । ଲିଲିପୁଟର ରାଜକର୍ମଚାରୀ କହିଲେ, "ଆମ ଦୁଇ ରାଜ୍ୟର ଶାନ୍ତି ଓ ବନ୍ଧୁତ୍ୱ ଦୃଷ୍ଟିରୁ ଆମ୍ଭ ମହାରାଜାଙ୍କର ଆଶା ଯେ ଆପଣ ଉକ୍ତ ମନୁଷ୍ୟପର୍ବତର ହାତ ଗୋଡ଼ ବାନ୍ଧି ଲିଲିପୁଟକୁ ପଠାଇ-ଦେବେ; ତାପରେ ଦେଶଦ୍ରୋହ ଅପରାଧରେ ସେ ଉପଯୁକ୍ତ ଦଣ୍ଡ ପାଇବ ।"

ବ୍ଲେଫୁସ୍କୁର ମହାରାଜା ତିନ ଦିନଯାଏ ମନ୍ତ୍ରିମଣ୍ଡଳ ଓ ପରିଷଦ ସହିତ ପରାମର୍ଶ କରି ଉତ୍ତର ଦେଇ ପଠାଇଲେ, "ଆପଣ ଭଲରୂପେ

ଜାଣନ୍ତି ଯେ ମନୁଷ୍ୟପର୍ବତରର ହାତଗୋଡ଼ ବାନ୍ଧି ତାକୁ ଲିଲିପୁଟ ପଠାଇଦେବା ଅମ୍ଭ ପକ୍ଷରେ ସମ୍ପୂର୍ଣ୍ଣ ଅସମ୍ଭବ । ସେ ଅମ୍ଭର ନୌବାହିନୀକୁ ଧ୍ୱଂସ କରିଥିଲେହେଁ ଅପଣଙ୍କ ସହିତ ଅମ୍ଭର ଯେ ବନ୍ଧୁତ୍ୱପୂର୍ଣ୍ଣ ସମ୍ବନ୍ଧ ସ୍ଥାପିତ ହୋଇଛି ସେଥିରେ ସେ ଯଥେଷ୍ଟ ସାହାଯ୍ୟ କରିଛି, ଏକଥା ସ୍ୱୀକାର କରିବାକୁ ହେବ । ଏସବୁ ଛଡ଼ା ଅମ ଜଉଦ୍ଧି ରାଜ୍ୟ ପକ୍ଷରେ ଶୁଭସଂବାଦ ହେଉଛି, ମନୁଷ୍ୟପର୍ବତ ଦୈବାତ୍ ଗୋଟିଏ ପ୍ରକାଣ୍ଡ ଜାହାଜ ସମୁଦ୍ରରେ ଭାସୁଥିବାର ଦେଖି ସେଥିରେ ଅମ୍ଭ ରାଜ୍ୟ ଛାଡ଼ି ଚାଲିଯିବାର ସ୍ଥିର କରିଛି । ମୋର ବିଶ୍ୱାସ, ଅତି ଅଳ୍ପ କେତେଦିନ ମଧ୍ୟରେ ଅମ୍ଭ ଜଉଦ୍ଧି ରାଜ୍ୟ ଏପରି ଗୋଟିଏ ବିରାଟ ଜୀବ ପୋଷିବା ଦାୟିତ୍ୱରୁ ରକ୍ଷା ପାଇବ ।”

ଲିଲିପୁଟର ଦୂତ ଏହି ସଂବାଦ ନେଇ ଫେରିଗଲେ । ବ୍ଲେଫୁସ୍କୁର ମହାରାଜା ମୋତେ ସମସ୍ତ କଥା ଜଣାଇ କହିଲେ ଯେ, ମୋତେ ରଖିବା ତାଙ୍କର ସମ୍ପୂର୍ଣ୍ଣ ଇଚ୍ଛା । ମୁଁ ବ୍ଲେଫୁସ୍କୁରେ ରହିଲେ ମୋତେ ସବୁ ପ୍ରକାରେ ସାହାଯ୍ୟ କରିବାକୁ, ଏପରିକି ଲିଲିପୁଟ ରାଜାଙ୍କର କ୍ରୋଧରୁ ରକ୍ଷା କରିବାକୁ ପ୍ରତିଶ୍ରୁତି ଦେଲେ । କିନ୍ତୁ ଏଥି-ମଧ୍ୟରେ ରାଜାରାଜୁଡ଼ାଙ୍କ ବିଷୟରେ ମୋର ଯଥେଷ୍ଟ ଅଭିଜ୍ଞତା ହୋଇସାରିଥିଲା । କୌଣସି ରାଜାଙ୍କ କଥାରେ ବିଶ୍ୱାସ ନ କରିବାକୁ ମୁଁ ଶିକ୍ଷା ପାଇଥିଲି । ତେଣୁ ମୁଁ ରାଜାଙ୍କ ଦୟା ନିମନ୍ତେ କୃତଜ୍ଞତା ପ୍ରକାଶ କରି ବ୍ଲେଫୁସ୍କୁ ତ୍ୟାଗ କରିବାର ଇଚ୍ଛା ଜଣାଇଲି ।

ମୋ ଅନୁରୋଧରେ ରାଜାଙ୍କ ଆଦେଶ ପାଇ କେତେ ଶହ କାରିଗର ଲାଗି ମୋ ନୌକାପାଇଁ କେତୋଟି ପାଲ ତିଆରି କରି ଦେଲେ । କେତେକ ଗଛ କାଟି ମୁଁ ହାତେ ହାତେ ମାସ୍ତୁଲ ତିଆରି କରିନେଲି ।

ସବୁ ଅୟୋଜନ ସାରି ମୁଁ ମହାରାଜା, ତାଙ୍କ ପରିବାର ଓ ରାଜକର୍ମଚାରୀମାନଙ୍କଠାରୁ ବିଦାୟ ନେଲି । ମୃତ୍ୟୁଚିହ୍ନସ୍ୱରୂପ ମହାରାଜା ମୋତେ କେତେକ ସ୍ୱର୍ଣ୍ଣମୁଦ୍ରା ଓ ନିଜର ଗୋଟିଏ ଛବି ଉପହାର ଦେଲେ ।

ମୁଁ ଜାହାଜରେ ଶହେ ବଳଦ ଓ ତିନି ଶହ ମେଣ୍ଢାର ମାଂସ ଏବଂ ଯଥେଷ୍ଟ ମଦ ସଂଗ୍ରହ କରି ରଖିଲି । କେତେକ ରନ୍ଧାଖାଦ୍ୟ ମଧ୍ୟ ଜାହାଜରେ ରଖାଗଲା । ଏସବୁ ଛଡ଼ା ମୁଁ ଛଅଟି ଗାଈ ଓ ଦୁଇଟି ଷଣ୍ଢ଼ ଏବଂ କେତେକ ମେଣ୍ଢା ନିଜ ଦେଶକୁ ଅଣିବା ପାଇଁ ମହାରାଜାଙ୍କ ଅନୁମତି ପାଇଲି । ସେ ଦେଶର ୮୧୦ ଜଣ ମନୁଷ୍ୟଙ୍କୁ ଅଣିବାର ଇଚ୍ଛା-ଥିଲା; କିନ୍ତୁ ମହାରାଜା କହିଲେ ଯେ, କେହି ରାଜି ହେଲେ ସୁଦ୍ଧା ତାଙ୍କର ପ୍ରିୟ ପ୍ରଜାଙ୍କ ମଧ୍ୟରୁ କାହାରିକୁ ମୁଁ ଅଣି ପାରିବି ନାହିଁ । କାଳେ ମୁଁ ତାହାକୁ ନେଇଅସିଥିବି, ସେଥିପାଇଁ ମୁଁ ନୌକାକୁ ଉଠିବାବେଳେ ରାଜକର୍ମଚାରୀମାନେ ମୋ ପକେଟ ଭଲରୂପେ ଖାନତଲାସ କରିଥିଲେ ।

—୧୫—

ପାଲଯୋଗେ ମୋ ନୌକା ଉତ୍ତର ଦିଗକୁ ଚାଲିଲା । ମୁଁ ଧିକାଳି ବାହାରିଥିଲି । ସନ୍ଧ୍ୟାବେଳକୁ ଉତ୍ତର-ପଶ୍ଚିମ ଦିଗରେ ଗୋଟିଏ ଦ୍ୱୀପ ଦେଖାଗଲା । ମୁଁ ସେହି ଦିଗକୁ ଗତି କରି ଦ୍ୱୀପଠାରୁ ଅଳ୍ପ ଦୂରରେ ଲଙ୍ଗର ପକାଇଲି । ଏହି ଦ୍ୱୀପଟି ନିର୍ଜନ ବୋଧ ହେଉଥିଲା । ଏଥିରେ ଜନପ୍ରାଣୀ ଥିବାର ଲକ୍ଷଣ ଦେଖାଗଲା ନାହିଁ ।

ମୋର ପକେଟ କମ୍ପାସ ସାହାଯ୍ୟରେ ଦିଗନିର୍ଣ୍ଣୟ କରି ପୁଣି ପୂର୍ବ ଦିଗକୁ ନୌକା ଚଳାଇଲି । ସେଦିନଟି ଚାଲିଗଲା । ତା ଅରି-ଦିନ ତିନିଟାବେଳେ ମୁଁ ଦୂରରେ ଗୋଟିଏ ଜାହାଜ ଦକ୍ଷିଣ-ପୂର୍ବ ଦିଗରେ ଯାଉଥିବାର ଦେଖିଲି ।

ମୁଁ ଜାହାଜର ଦୃଷ୍ଟି ଆକର୍ଷଣ କରିବାକୁ ଯଥାସାଧ୍ୟ ଚେଷ୍ଟା କଲି । ପ୍ରାୟ ଅଧଘଣ୍ଟାପରେ ଜାହାଜର ଲୋକେ ମୋ ନୌକାକୁ ଦେଖିପାରିଲେ । ଜାହାଜ ତାର ଗତି ବନ୍ଦ କଲା । ମୁଁ ତା ପାଖକୁ ମୋ ନୌକା ଚଳାଇଲି । ସେତେବେଳକୁ ପ୍ରାୟ ସନ୍ଧ୍ୟା ହୋଇ ଆସିଥାଏ । ସେଦିନ ହେଉଛି ସେପ୍‌ଟେମ୍ବର ଛବିଶ ତାରିଖ । ମୁଁ ମୋର ସମସ୍ତ ଜିନିଷ ସହିତ ଜାହାଜରେ ବସିଲି ।

ଏହି ଜାହାଜଟି ଇଂରେଜୀ ଜାହାଜ । ଏଥିରେ ପ୍ରାୟ ୫୦ ଜଣ ଲୋକ ଥିଲେ । ସେମାନଙ୍କମଧ୍ୟରୁ ଜଣେ ମୋର ପୁରାତନ ବନ୍ଧୁ । ସେ ମୋତେ କପ୍ତାନଙ୍କ ସଙ୍ଗେ ପରିଚିତ କରାଇଦେଲେ ।

ମୁଁ କିପରି ଏ ନୌକାରେ ସେଠାକୁ ଆସିଲି, କେଉଁଠାକୁ ଯିବି, ଏହିପରି ନାନା ପ୍ରଶ୍ନ ମୋତେ କପ୍ତାନ ପଚାରିଲେ । ମୁଁ ସଂକ୍ଷେପରେ ମୋ ଜୀବନର ସମସ୍ତ ଘଟନା କହିଗଲି । କିନ୍ତୁ ମୋ କଥା ଶୁଣି ସେ ଭାବିଲେ ଯେ ବୋଧ ହୁଏ ଦୁଃଖ କଷ୍ଟ ସହିସହି ମୋର ମସ୍ତିଷ୍କ ବିକୃତ ହୋଇଯାଇଅଛି । କିନ୍ତୁ ମୁଁ ପକେଟରୁ ସେଦେଶର ଷଣ୍ଢ, ଗାଈ, ମେଣ୍ଢା ପ୍ରଭୃତି ବାହାର କରି ଦେଖାଇବାରୁ ତାଙ୍କର ସେ ଧାରଣା ଦୂର ହୋଇଗଲା । ମୁଁ କପ୍ତାନଙ୍କୁ କିଛି ସ୍ୱର୍ଣ୍ଣମୁଦ୍ରା, ଗୋଟିଏ ଗାଈ ଓ ଗୋଟିଏ ମେଣ୍ଢା ଉପହାର ଦେଲି ।

ବାଟରେ କିଛି ବିପଦ ଘଟି ନ ଥିଲା । ୧୭୦୨ ମସିହା ଅପ୍ରେଲ ମାସ ୧୩ ତାରିଖରେ ଜାହାଜ ଡାଉନ୍‌ସ ବନ୍ଦରରେ ଲାଗିଲା । ଦୁଃଖର ବିଷୟ ଏହି ଯେ, ଜାହାଜରେ ମୋର ଗୋଟିଏ ମେଣ୍ଢାକୁ ମୂଷାମାନେ ଖାଇଯାଇଥିଲେ ।

ଶେଷରେ ମୁଁ ସ୍ୱଦେଶରେ ପହଞ୍ଚି ଆତ୍ମୀୟସ୍ୱଜନଙ୍କୁ ଦେଖିଲି । ଏହିଠାରେ ମୋ ଜୀବନର ଗୋଟିଏ ଅଧ୍ୟାୟ ଶେଷ ହେଲା ।

---

## ଦ୍ୱିତୀୟ ଭାଗ

# ଅତିକାୟ ମାନବର ଦେଶ ବ୍ରବଡ଼ିଙ୍ଗନାଗ

— ୧ —

ସ୍ଥିର ହୋଇ ରହିବା ମୋର ପ୍ରକୃତିବିରୁଦ୍ଧ । ଲିଲିପୁଟର ଅଭୂତ ଅନୁଭୂତି ଘେନି ସ୍ୱଦେଶକୁ ଫେରିବାର ଦୁଇ ମାସପରେ ମୋତେ ଦୈବକ୍ରମେ ପୁଣି ସମୁଦ୍ରଯାତ୍ରା କରିବାକୁ ହେଲା । 'ଏଡ଼ଭେଞ୍ଚର' ନାମକ ଜାହାଜରେ ବସି ଆମ୍ଭେମାନେ ୧୭୦୨ ମସିହା ଜୁନ ୨୦ ତାରିଖରେ ବାହାରିଲୁଁ । ଜନ୍ ନିକୋଲସ୍ ଏହି ଜାହାଜର କପ୍ତାନ ଥିଲେ ଓ ଆମ୍ଭମାନଙ୍କର ଲକ୍ଷ୍ୟସ୍ଥଳ ଥିଲା ସୁରାଟ ।

ଉତ୍ତମାଶା ଅନ୍ତରୀପରେ ପହଞ୍ଚିବା ପର୍ଯ୍ୟନ୍ତ ବାୟୁ ଆମର ବେଶ ଅନୁକୂଳ ଥିଲା । ଆମ୍ଭେମାନେ ସେଠାରେ ଓହ୍ଲାଇ ମଧୁର ଜଳ ସଂଗ୍ରହ କଲୁଁ । କିନ୍ତୁ ଏହି ସମୟରେ ଦେଖାଗଲା ଯେ ଜାହାଜରେ ଗୋଟିଏ ଛିଦ୍ର ହୋଇଯାଇଛି । ପୁଣି କପ୍ତାନ ପୀଡ଼ିତ ହେବାରୁ ଜାହାଜ ଛାଡ଼ିବା ସମ୍ଭବପର ହେଲା ନାହିଁ । ଆମ୍ଭେମାନେ ସେଠାରେ କିଛି ଦିନ କଟାଇବାକୁ ସ୍ଥିର କଲୁଁ ।

ଜାହାଜ ମରାମତି କରାଗଲା । କପ୍ତାନଙ୍କର ଚିକିତ୍ସାର ବ୍ୟବସ୍ଥା ହେଲା । ୧୭୦୩ ମସିହା ମାର୍ଚ୍ଚ ମାସରେ ଆମ ଜାହାଜ ପୁଣି ଆଫ୍ରିକାର ପୂର୍ବ ଉପକୂଳରେ ଗତି କଲା । ମାଡ଼ାଗାସ୍କର ପ୍ରଣାଳୀରେ ଯାଉଥିବା ସମୟରେ ଅପ୍ରେଲ ୧୯ ତାରିଖ ଦିନ ହଠାତ୍ ପ୍ରବଳ ପବନ ବହିଲା । ସାଧାରଣତଃ ସେ ଅଞ୍ଚଳରେ ଏ ସମୟରେ ଧୀର ପବନ ଉତ୍ତର-ପଶ୍ଚିମ ଦିଗରୁ ବହେ; କିନ୍ତୁ ଏହି

ପବନ ପ୍ରବଳ ବେଗରେ ପଶ୍ଚିମ ଦିଗରୁ ବହି ଜାହାଜକୁ ଇତସ୍ତତଃ କଲା । କୋଡ଼ିଏ ଦିନ ପର୍ଯ୍ୟନ୍ତ ଏହିପରି ପବନ ବହିଲା । ଫଳରେ ଆମ ଜାହାଜ ମଲକ୍କା ଦ୍ୱୀପପୁଞ୍ଜର ପୂର୍ବଦିଗକୁ ଗୁଲିଯାଇଥିଲା । ମେ ମାସ ୨ ତାରିଖ ଦିନ ପବନର ବେଗ ପୂର୍ଣ୍ଣରୂପେ କମି ଆସିଲା । ଏହା ଦେଖି ଆମର ଆନନ୍ଦ ହେଲା; କିନ୍ତୁ କପ୍ତାନ ଜଣେ ଅଭିଜ୍ଞ ବ୍ୟକ୍ତି, ସେ ଆମ୍ଭମାନଙ୍କୁ ସାବଧାନ କରିଦେଲେ ଯେ, ଏପ୍ରକାର ଶାନ୍ତ ବାୟୁ ଝଡ଼ର ପୂର୍ବ ଲକ୍ଷଣ ।

କପ୍ତାନଙ୍କ କଥା ସତ୍ୟ ହେଲା । ୩ ତାରିଖ ଦିନ ପ୍ରବଳ ପବନ ଦକ୍ଷିଣ ଦିଗରୁ ବହିବାକୁ ଆରମ୍ଭ କଲା । ଆମ୍ଭେମାନେ ଯଥାଶକ୍ତି ଜାହାଜକୁ ସ୍ଥିର ରଖିବାକୁ ଚେଷ୍ଟା କଲୁ । ମାତ୍ର ଏପ୍ରକାର ପ୍ରବଳ ବାତ୍ୟାମୁଖରୁ ଜାହାଜକୁ ରକ୍ଷା କରିବାର ଆଶା ଦେଖାଗଲା ନାହିଁ । କେତେକ ସମୟପରେ ପବନ ଟିକିଏ ଶାନ୍ତ ହେଲା; କିନ୍ତୁ ହିସାବରୁ ଜଣାଗଲା ଯେ ଜାହାଜଟି ପ୍ରାୟ ୧୫୦୦-ମାଇଲ ପୂର୍ବକୁ ଭାସି ଆସିଛି । ତେଣୁ ଆମ ଜାହାଜର ଅବସ୍ଥାନ କେଉଁଠି କେହି ସ୍ଥିର କରିପାରିଲେ ନାହିଁ ।

ସେତେବେଳକୁ ଜାହାଜରେ ଯଥେଷ୍ଟ ଖାଦ୍ୟ ଥାଏ; କିନ୍ତୁ ପାନୀୟ ଜଳ ସରି ଆସିଥାଏ । ଆମ୍ଭେମାନେ ଗନ୍ତବ୍ୟପଥ ସ୍ଥିର କରି ନ ପାରି ଯେଉଁ ଦିଗକୁ ପବନର ଗତି ଥିଲା, ସେହି ଦିଗକୁ ଜାହାଜ ଚଳାଇଲୁ । ଜୁନ ମାସ ୧୬ ତାରିଖ ଦିନ ଜଣେ ଲୋକ ମାସ୍ତୁଲ୍ ଉପରୁ ସ୍ଥଳଭାଗ ଦେଖିପାରିଲା । ତା ପରଦିନ ଆମ୍ଭେମାନେ ସେହି ସ୍ଥଳଭାଗ ସ୍ପଷ୍ଟ ଦେଖିପାରିଲୁ । ଏହାର ଦକ୍ଷିଣ ଅଂଶ ଖୁବ୍ ଅଗଭୀର । ସେଥିରେ ଜାହାଜ ରହିବା ସମ୍ଭବପର ନୁହେଁ । ତେଣୁ ସ୍ଥଳଭାଗଠାରୁ ପ୍ରାୟ ୩ ମାଇଲ ଦୂରରେ

ଅମ୍ଭେମାନେ ଲଙ୍ଗର ପକାଇଲୁଁ । କପ୍ତାନଙ୍କ ଆଦେଶରେ ବାର ଜଣ ଲୋକ ଅସ୍ତ୍ରଶସ୍ତ୍ର ଧରି ପାଣି ଆଣିବା ଉଦ୍ଦେଶ୍ୟରେ ଗୋଟିଏ ନୌକାରେ ବସି ବାହାରିଲେ । ମୁଁ ମଧ୍ୟ ସେମାନଙ୍କ ସଙ୍ଗେ ଗଲି । ଅମ୍ଭେମାନେ ପାଣିର ସନ୍ଧାନରେ କିଛି ସମୟ ବୁଲିଲୁଁ । ମୁଁ କ୍ଳାନ୍ତ ହୋଇଥିବାରୁ ସଙ୍ଗୀମାନଙ୍କୁ ଛାଡ଼ି ସମୁଦ୍ରନିକଟବର୍ତ୍ତୀ ଗୋଟିଏ ନିମ୍ନ ସ୍ଥାନରେ ବିଶ୍ରାମ ନେଲି । କିଛି ସମୟପରେ ଦେଖିପାରିଲି ଯେ ମୋର ସାଥୀମାନେ ନୌକାରେ ବସି ଅତି ବେଗରେ ଜାହାଜ ଆଡ଼କୁ ଗ୍ଭଲିଛନ୍ତି ।

ମୁଁ ଚିତ୍କାର କରି ସେମାନଙ୍କୁ ଡାକିବାକୁ ମନ କରୁଛି, ଏହି ସମୟରେ ଗୋଟାଏ ପ୍ରକାଣ୍ଡ ଜୀବ ସେମାନଙ୍କ ପଛେ ପଛେ ସମୁଦ୍ରରେ ଗ୍ଭଲିଥିବାର ଦେଖିପାରିଲି । ସମୁଦ୍ରପାଣି ତାର ଅଣ୍ଠୁ ପର୍ଯ୍ୟନ୍ତ ହୋଇଥାଏ । ଥରେ ପାଦ ପକାଇ ସେ ୮।୧୦ ଗଜ ଯାଉଥାଏ । କିନ୍ତୁ ଆମ ଲୋକେ ତାଠାରୁ ପ୍ରାୟ ଦୁଇ ମାଇଲ ଆଗରେ ଥିଲେ । ପୁଣି ସମୁଦ୍ରର ନିମ୍ନଭାଗ ଅସମତଳ ହୋଇଥିବାରୁ ସେହି ପ୍ରକାଣ୍ଡ ଜୀବଟା ବେଗରେ ଯାଇ ପାରୁ ନ ଥାଏ । ନୌକା ଜାହାଜ ନିକଟରେ ପହଞ୍ଚିଗଲା ।

ମୁଁ ବସିବା ସ୍ଥାନରୁ ପଳାଇଯାଇ ଗୋଟିଏ ପାହାଡ଼ଉପରେ ଚଢ଼ିଗଲି । ଦେଖିଲି ଯେ ଦେଶଟାଯାକ ଫସଲରେ ପୂରିଛି । କିନ୍ତୁ ଗୋଟାଏ କଥା ମୋତେ ଭାରି ଆଶ୍ଚର୍ଯ୍ୟ ଲାଗିଲା । ଫସଲଗଛ ଗୁଡ଼ାକ ଅତି ପ୍ରକାଣ୍ଡ; ଏପରିକି ଘାସଗଛଗୁଡ଼ାକର ଉଚ୍ଚତା ୨୦ ଫୁଟ ହେବ ।

ମୁଁ ଗୋଟାଏ ବଡ଼ ରାସ୍ତାକୁ ଆସିଲି । ପ୍ରକୃତରେ ସେଇଟି ସେଦେଶର ଗୋଟିଏ ଅତି ସରୁ ରାସ୍ତା । ରାସ୍ତାଟି ଗହମକିଆରି-ମଝିରେ ଥିବା ଗୋଟିଏ ହିଡ଼ ମାତ୍ର । ଦେଖେଁ ତ ଗହମଗଛସବୁ

ପ୍ରାୟ ଗୁଳଣ ଫୁଟଯାଏ ବଢ଼ିଛୁ । ମୋତେ ଅଜ କଛୁ ଦଶୁ ନ ଥାଏ ।

ମୁଁ ଯେଉଁ କଅଣ୍ଠ ପାଖରେ ଯାଉଥିଲି, ସେଥିରୁ ତା ପାଖ କଅଣ୍ଠକୁ ଯିବାପାଇଁ ଗୋଟିଏ ଜାଗାରେ ପାହାଡ ଡିଅଁର ହୋଇଥିଲା । ପ୍ରତି ପାହାଚ ଛଅ ଫୁଟ ଉଚ୍ଚ । ତେଣୁ ମୁଁ ପାହାଚ-ଉପରକୁ ଉଠିପାରିଲି ନାହିଁ । ମୁଁ କେଉଁଠି ବାଟ ପାଇଲେ ଗଳିଯିବାକୁ ଖୋଜୁଛି, ଏହି ସମୟରେ ଜଣେ ସେଦେଶର ଲୋକ ପାହାଚ ଅଡ଼କୁ ଅସୁଥିବାର ଦେଖିପାରିଲି । ସମୁଦ୍ରରେ ଯେତିକି ଉଚ୍ଚ ଲୋକ ଆମ ଜାହାଜ ଅଡ଼କୁ ଯାଉଥିବାର ଦେଖିଥିଲି, ଏ ଲୋକଟି ସେତିକି ଉଚ୍ଚ ହେବ ।

ତାକୁ ଦେଖି ମୋର ମନେ ହେଲା ଯେ ଆମ ସହରର ଗିର୍ଜା ଯେତିକି ଉଚ୍ଚ ସେ ସେତିକି ଉଚ୍ଚ । ପାହୁଣ୍ଡକେ ସେ କୋଡ଼ିଏ ହାତ ଯାଉଥାଏ । ମୋର ମନ ଭୟ ଓ ବିସ୍ମୟରେ ପୂରିଗଲା । ମୁଁ ଗହମକଅଣ୍ଠଭିତରେ ଲୁଚିଯାଇ ତାକୁ ଗୁହିଁଲି । ସେ ଟିକିଏ ପଛକୁ ଗୁହିଁ କାହାକୁ ଡାକିଲା । ତାର ସେ ଶବ୍ଦରେ ମୋର କାନ ବଧିର ହୋଇଗଲା ।

ତାର ଭଳି ସାତଟି ଗ୍ରାଷସମୂର୍ତ୍ତି ତା ପାଖରେ ଅସି ପହଞ୍ଚିଗଲେ । ପ୍ରତ୍ୟେକେ ଗୋଟିଏ ଲେଖାଏଁ ଦାଆ ହାତରେ ଧରିଥାନ୍ତି । ଅବଶ୍ୟ ଦାଆଗୁଡ଼ିକର ଆକାର ଆମ ଦାଆର ଅଠ ଦଶ ଗୁଣ ହେବ । ସେମାନଙ୍କ ଭିତରେ କିଛି ସମୟ କଥାବାର୍ତ୍ତା ଗ୍ଲଲାପରେ ସେମାନେ ମୁଁ ଲୁଚିଥିବା କଅଣ୍ଠର ଗହମ କାଟିବାକୁ ଆରମ୍ଭ କଲେ । ଅନ୍ୟ ଛଅ ଜଣ ପ୍ରଥମଟି ପରି ଭଲ ଲୁଗାପଟା ପିନ୍ଧି ନ ଥିଲେ । ବୋଧ ହୁଏ, ସେମାନେ ପ୍ରଥମ ଜଣଙ୍କର ଗୁଷର କମ୍ପା ମଜୁରିଆ ହୋଇଥିବେ । ମୁଁ ସେମାନଙ୍କଠାରୁ ଯଥାସମ୍ଭବ ଦୂରରେ ରହିବାକୁ ଚେଷ୍ଟା

କରୁଥାଏଁ; କିନ୍ତୁ ଗହମଗଛଗୁଡ଼ିକମଧ୍ୟରେ ବେଶୀ ବ୍ୟବଧାନ ନ ଥିବାରୁ ମୋତେ ବଡ଼ କଷ୍ଟରେ ଯିବାକୁ ପଡ଼ୁଥାଏ । ଶେଷରେ ମୁଁ ଏପରି ଗୋଟିଏ ଜାଗାରେ ପହଞ୍ଚିଲି ଯେ ସେଠାରୁ ଆଉ ଆଗକୁ ଯିବା ଅସମ୍ଭବ ହେଲା; କାରଣ ସେଠାର ଗହମଗଛଗୁଡ଼ିକ ଭାଙ୍ଗି-ପଡ଼ିଥିଲା । ସେତେବେଳକୁ ଗହମକଟାଳିମାନେ ମୋଠାରୁ ମାତ୍ର କୋଡ଼ିଏ ହାତ ଦୂରରେ ଥାଆନ୍ତି । ଦଉଡ଼ି ଦଉଡ଼ି ମୁଁ କ୍ଳାନ୍ତ ହୋଇଯାଇଥାଏଁ । ଭୟ, ବିସ୍ମୟ ଓ ନୈରାଶ୍ୟରେ ପଡ଼ିଯାଇ ମୁଁ ଭାବିଲି ଯେ ଏପରି ଅବସ୍ଥାରେ ମୋର ମୃତ୍ୟୁ ଶ୍ରେୟସ୍କର । ମୋ ଅଭାବରେ ବିଧବା ସ୍ତ୍ରୀ ଓ ପିତୃହୀନ ସନ୍ତାନମାନଙ୍କର ଅବସ୍ଥା ଯେ କଣ ହେବ ଭାବିପାରିଲି ନାହିଁ । ବନ୍ଧୁବାନ୍ଧବମାନଙ୍କର ନିଷେଧ ନ ମାନି ପୁଣି ସମୁଦ୍ରଯାତ୍ରା କରିଥିବା ହେତୁରୁ ଘୋର ଅନୁତାପ ଜାତ ହେଲା ।

— ୨ —

ମୁଁ ଏହିପରି ଚିନ୍ତା କରୁଥିବା ସମୟରେ ହଠାତ୍ ଦେଖିବାକୁ ପାଇଲି ଯେ ସେହି ରାକ୍ଷସମାନଙ୍କରୁ ଜଣେ ମୋଠାରୁ କୋଡ଼ିଏ ପଚିଶ ହାତ ଦୂରରେ ଅଛନ୍ତି । ଆଉ ପାଞ୍ଚଣ୍ଟେ ଆସିଲେ ମୁଁ ତା ପାଦତଳେ ଚିପି ହୋଇଯିବି କିମ୍ବା ତାର ବିରାଟ ଦାଆରେ ଦୁଇଖଣ୍ଡ ହୋଇଯିବି । ତେଣୁ ଭୟରେ ମୁଁ ଖୁବ୍ ଚିତ୍କାର କରିଉଠିଲି । ମୋର ଏହି ଚିତ୍କାର ଶୁଣି ସେହି ରାକ୍ଷସଟି ମୁଣ୍ଡ ନୁଆଇଁ ଚାରିଆଡ଼କୁ ନିରେଖି ଚାହିଁଲା । ଶେଷରେ ମୋତେ ଦେଖିପାରି କିଛି ସମୟ କଣ ଭାବିଲା । ବୋଧ ହୁଏ ମୋତେ ଦେଖି ସେ ମନେ କଲା ଯେ ମୁଁ ଗୋଟାଏ କୌଣସି ବିଷାକ୍ତ କୀଟ ବା ପତଙ୍ଗ । କିଛି ସମୟପରେ ସେ ଦୁଇଟି ଆଙ୍ଗୁଠିରେ ମୋର ଅଣ୍ଟାକୁ ଧରି

ଅଖି ସିଧାକୁ ଟେକି ଧରିଲା । ବୋଧ ହୁଏ ମୁଁ କି ଜାତିର ଜୀବ ଜାଣିବାପାଇଁ ସେ ଏପରି କରୁଥିଲା । ମୋତେ ସୁବୁଦ୍ଧି ଦିଶିଲା । ମୁଁ ପଳାଇଯିବାକୁ ଚେଷ୍ଟା କଲି ନାହିଁ । ଦୁଇ ହାତକୁ ଯୋଡ଼ି ଉପରକୁ ମୁହଁ କରି ବଡ଼ ନମ୍ରଭାବରେ ମୋର ଦୁର୍ଦ୍ଦଶା କଥା ତାକୁ କହିଲି । ମନେ ମନେ ମୋର ଭୟ ହେଉଥାଏ ଯେ ହୁଏତ ସେ ମୋତେ ତଳେ ଫିଙ୍ଗିଦେବ । ଏତେ ଉଚ୍ଚରୁ ପଡ଼ିଲେ ମୋର ମୃତ୍ୟୁ ନିଶ୍ଚିତ । ଯାହା ହେଉ ମୋର ଭାଗ୍ୟ ଭଲ । ମୋର ସ୍ୱର ଓ ଅଙ୍ଗଭଙ୍ଗୀ ଶୁଣି ସେ ଖୁବ୍ ଆନନ୍ଦିତ ହେଲାପରି ଜଣାଗଲା । ସେ ମୋତେ ନେଇ ତାହାର ପ୍ରଭୁ ନିକଟରେ ପହଞ୍ଚିଲା । ବୋଧ ହୁଏ ସେ ମୋର ପୋଷାକକୁ ଦେଖି ମନେ କରିଥିଲା ଯେ ଏହା ମୋର ପ୍ରକୃତିଦତ୍ତ ଶରୀରର ଗୋଟିଏ ଅଂଶ । ସେ ଖଣ୍ଡିଏ କାଠି ଆଣି ମୋ ପୋଷାକକୁ ସେଥିରେ ଟେକି ଦେଖିଲା । ମୋ ମୁଣ୍ଡବାଳକୁ ଫୁଙ୍କି ମୋ ମୁହଁକୁ ଭଲ କରି ଚାହିଁଲା । ସେ ତାର ଲୋକମାନଙ୍କୁ ଡାକି କେତେକ କଥା କହିଲା । ପରେ ମୁଁ ଜାଣିଲି, ସେ ସେମାନଙ୍କୁ ପଚାରିଥିଲା ଯେ ମୋପରି ପୋକ କେବେ କେଉଁଠାରେ ଦେଖିଥିଲେ କି । ମୁଁ ଯେ କୌଣସି କୀଟପତଙ୍ଗ ନୁହେଁ ଓ ଗୋଟିଏ ମଣିଷ ଏହା ଜଣାଇବା ପାଇଁ ଟିକିଏ ପାଖକୁ ଚାଲିଲି ଏବଂ ପଳାଇଯିବା ମୋର ଅଭିପ୍ରାୟ ନୁହେଁ ବୋଲି ଜଣାଇଦେଲି । ସେମାନେ ସମସ୍ତେ ମୋ ଚାରି-ପାଖରେ ବସିରହିଲେ । ମୁଁ ସେହି କୃଷକକୁ ନମସ୍କାର କଲି । ତତ୍‌ପରେ ଆଣ୍ଠୁ ମାଡ଼ି ବସି ମୋର ଦୁଃଖ କହିଗଲି । ଅବଶ୍ୟ ସେମାନେ ମୋ କଥାର କୌଣସି ଅର୍ଥ ବୁଝି ନ ଥିଲେ । ମୁଁ ମୋ ପକେଟରୁ ମୋହର ରଖିଥିବା ଥଳୀଟି କାଢ଼ି ତାହାକୁ ଦେଲି । ସେ ଥଳୀଟି ନେଇ ଅନେକ ସମୟଯାଏ ଚାହିଁଲା । କିନ୍ତୁ ଏହା କଣ ଜାଣିପାରିଲା ନାହିଁ । ତହୁଁ ମୁଁ ଠାରଦ୍ୱାରା ତାହାକୁ ପୁଣି ମାଗିଆଣି

ଖୋଲି ସେଥିରୁ ମୋହରଗୁଡ଼ିକ କାଢ଼ିଆଣିଲି ଓ ସେଗୁଡ଼ିକ ତାହା ହାତରେ ଦେଲି । ତଥାପି ସେ ମୋହରଗୁଡ଼ିକ କଅଣ ଜାଣିପାରିଲା ନାହିଁ । ମୁଁ ବାଧ୍ୟ ହୋଇ ସେଗୁଡ଼ିକୁ ପୁଣି ଥଳୀରେ ରଖିଲି ।

ଏଥିମଧ୍ୟରେ ସେ ବୁଝିପାରିଥିଲା ଯେ ମୁଁ ଗୋଟିଏ ବୁଦ୍ଧିମାନ୍ ଜୀବ । ସେ ମୋତେ କେତେକ କଥା ପଚାରିଲା; ମାତ୍ର ମୁଁ କିଛି ବୁଝିପାରିଲି ନାହିଁ । ମୋତେ ଯେତେ ଭାଷା ଜଣା ଥିଲା ସବୁ ଭାଷାରେ କହିଲି; କିନ୍ତୁ ସେ କୌଣସିଟିକୁ ବୁଝିପାରିଲା ନାହିଁ । ଚାକରମାନଙ୍କୁ ପୁଣି କାମକୁ ପଠାଇଦେଇ ସେ ନିଜ ରୁମାଲଟିକୁ ଚାରିଭାଗ କରି ତଳେ ପକାଇଦେଲା । ତାପରେ ତାହାଉପରେ ଠିଆ ହେବାକୁ ମୋତେ ଠାରିଲା । ରୁମାଲଟି ଚାରିଭାଗ ହୋଇଥିବାରୁ ପ୍ରାୟ ଫୁଟେ ଉଚ୍ଚ ହୋଇଥାଏ । ମୁଁ ସହଜରେ ତାହାଉପରକୁ ଉଠିଗଲି । ପଡ଼ିଯିବା ଭୟରେ ମୁଁ ସେହି ରୁମାଲଉପରେ ଶୋଇ-ପଡ଼ିଲି । ସେ ରୁମାଲର କଣଗୁଡ଼ିକୁ ଏକାଠି କରି ଧରି ମୋତେ ଘରକୁ ନେଇଗଲା । ଘରେ ପହଞ୍ଚିବାମାତ୍ରେ ସ୍ତ୍ରୀକୁ ଡାକି ତାହାକୁ ମୋତେ ଦେଖାଇଲା । ଆମ ଦେଶର ସ୍ତ୍ରୀଲୋକେ ଗୋଟାଏ ବେଙ୍ଗ କି ମାକଡ଼ସା ଦେଖିଲେ ଯେପରି ଚିତ୍କାର କରିଉଠନ୍ତି, ତାର ସ୍ତ୍ରୀ ମୋତେ ଦେଖିଲାକ୍ଷଣି ସେହିପରି ଚିତ୍କାର କରିଉଠିଲା; କିନ୍ତୁ କିଛି ସମୟ ମୋର ବ୍ୟବହାର ଦେଖିବାପରେ କ୍ରମେ ମୋତେ ଆଦର କରିବାକୁ ଲାଗିଲା ।

ସେତେବେଳକୁ ଦିନ ପ୍ରାୟ ଦୁଇ ପ୍ରହର । ଜଣେ ଚାକର ଖାଇବାକୁ ଆଣି ପହଞ୍ଚିଲା । ଯେଉଁ ଥାଳୀରେ ସେ ଖାଇବାକୁ ଆଣିଥିଲା ତାହାର ବ୍ୟାସ ପଚିଶ ଫୁଟ ହେବ । କୃଷକ, ତାହାର ସ୍ତ୍ରୀ, ତିନୋଟି ପିଲା ଓ ଗୋଟିଏ ବୁଢ଼ୀ ଏକାଠି ଖାଇବସିଲେ ।

ସେମାନେ ଯେଉଁ ଟେବୁଲ ଉପରେ ଖାଇ ବସିଥିଲେ ତାହା ଭୂମିଠାରୁ ତିରିଶ ଫୁଟ ଉଚ୍ଚ ହେବ । ସେ ମୋତେ ଦୁଇ ଅଙ୍ଗୁଠିରେ ଟେକିନେଇ ଟେବୁଲର ଗୋଟିଏ ପାଖରେ ଥୋଇ ଦେଲା । କାଳେ ପଡ଼ିଯିବି ବୋଲି ମୋତେ ଭାରି ଭୟ ହେଉଥାଏ । କୃଷକର ସ୍ତ୍ରୀ ଖଣ୍ଡିଏ ମାଂସକୁ ହିକି ଟିକି କରି କାଟି ରୁଟି ସହିତ ମୋ ଆଗରେ ରଖିଦେଲା । ମୁଁ ତାହାକୁ ନମସ୍କାର କରି ମୋ ପକେଟରୁ ନିଜର ଛୁରୀ ଓ କଣ୍ଟା ବାହାର କରି ମାଂସ ଓ ରୁଟିକୁ କାଟି ଖାଇବାକୁ ଲାଗିଲି । ମୋ ଖାଇବା ଦେଖି ସେମାନେ ଆନନ୍ଦିତ ହେଲାପରି ଜଣାଗଲା । କୃଷକ ଗୃହିଣୀ ଚାକରାଣୀକୁ ଗୋଟିଏ ଗ୍ଲାସ ଆଣିବାକୁ କହିଲେ । ସେଥିରେ ପ୍ରାୟ ଦୁଇସେର ପାଣି ଧରିବ । ଯାହାହେଉ, ସେହି ଗ୍ଲାସଟକୁ ଦୁଇହାତରେ ବହୁକଷ୍ଟରେ ଟେକି ମୁଁ ପିଇଲି । ମୁଁ ନିଜ ମାତୃଭାଷାରେ ସେମାନଙ୍କୁ ଧନ୍ୟବାଦ ଦେଲି । ତାହା ଶୁଣି ସେମାନେ ଏପରି ହସିଲେ ଯେ ଘଡ଼ ଘଡ଼ ପରି ଶବ୍ଦ ହେଲା । ଖାଇବା ପରେ କୃଷକ ମୋତେ ତା ନିକଟକୁ ଯିବାକୁ ଠାରିଲା । ମୁଁ ଟେବୁଲ ଉପରେ ସାବଧାନରେ ଯାଉ ଯାଉ ଅଇଁଠା ରୁଟି ଖଣ୍ଡେ ଝୁଣ୍ଟି ମୁହଁମାଡ଼ି ପଡ଼ିଗଲି । ଭାଗ୍ୟକୁ ମୁଁ ବେଶୀ ଆଘାତ ପାଇ ନ ଥିଲି । ସେମାନେ ମୋହର ଏହି ଅବସ୍ଥା ଦେଖି ଦୁଃଖିତ ହେଲାପରି ଜଣାଗଲା । କିନ୍ତୁ ମୁଁ ମୋର ବ୍ୟବହାର ଦ୍ୱାରା ଜଣାଇ ଦେଲି ଯେ ଆଶଙ୍କାର କୌଣସି କାରଣ ନାହିଁ ।

ଏହି କୃଷକ ଗୃହିଣୀର ଗୋଟିଏ ବିରାଡ଼ି ଥାଏ । ସେ ଦଉଡ଼ି ଆସି ତାହା କୋଳରେ ପଶିଗଲା । ଆକାରରେ ଏହି ବିରାଡ଼ିଟି ଆମଦେଶର ଗୋଟିଏ ବଳଦର ତିନିଗୁଣ ହେବ । ସେ ଗୁଡ଼ୁ ଗୁଡ଼ୁ ହେଲାବେଳେ ପ୍ରକାଣ୍ଡ ଶବ୍ଦ ହେଉଥାଏ । ଏହି ଜନ୍ତୁଟିର ଚେହେରା ଦେଖି ମୋର ଭୟ ହୋଇଗଲା । କାଳେ ମୋ ଉପରକୁ ଡେଇଁ ପଡ଼ି

ମୋତେ ଚପିଦେବ ଭୟ ହେଉଥାଏ । ଅବଶ୍ୟ ଗୃହିଣୀ ତାଙ୍କୁ କୋଳରେ ଦୃଢ଼ ଭାବରେ ଧରିଥାନ୍ତି । ଯାହାହେଉ ବିରାଡ଼ିଟି ମୋ ଅଡ଼କୁ ଅଦୌ ଗୁହିଁଲା ନାହିଁ । ମୁଁ ଖୁବ୍ ସାହସ କରି ଟେବୁଲ ଉପରେ ଏପାଖ ସେପାଖ ହେଉଥାଏ । ଭୟର କୌଣସି ଚିହ୍ନ ମୋଠାରେ ଦେଖା ଯାଉ ନଥିଲା । ମୁଁ ଶୁଣିଛି ଯେ ହିଂସ୍ର ଜନ୍ତୁଙ୍କ ନିକଟରେ ପଳାଇଯିବା ବା ଭୟ ପ୍ରକାଶ କରିବା ବିପଦର କାରଣ । ମୋର ଏହି ଅଭିଜ୍ଞତାରୁ ଏ କଥା ସତ୍ୟ ବୋଲି ଜାଣି ଅଛି । ମୁଁ ବିରାଡ଼ିର ଅତି ନିକଟରେ ଅନେକ ଥର ଯିବାଆସିବା କଲି । ବୋଧହୁଏ, ବିରାଡ଼ିର ମୋପ୍ରତି ଟିକିଏ ଭୟ ଜନ୍ମୁଥିଲା । ସେହି ଘରେ ତିନିଗୁଟି କୁକୁର ମଧ୍ୟ ବୁଲୁଥିଲେ । ସେମାନଙ୍କର ଆକାର ମଧ୍ୟ ଅତି ବୃହତ୍ । ସେମାନଙ୍କ ମଧ୍ୟରୁ ଗୋଟିଏ ଗୋଟିଏ ଗୁରିଟି ହାତୀସହିତ ଆକାରରେ ସମାନ ହେବେ ।

ଆମର ଖାଇବା ସରିଆସିବାବେଳକୁ ଜଣେ ଗୃହିଣୀ କୋଳରେ ବର୍ଷିକିଆ ପିଲାଟିଏ ଧରି ଆସି ପହଞ୍ଚିଲା । ସେ ପିଲାଟି ମୋତେ ଦେଖିଲାକ୍ଷଣି ଏପରି କାନ୍ଦିଲା ଯେ ତାର ସ୍ୱର ମାଇଲେ ଦୂରକୁ ଶୁଣାଯାଉଥିବ । ସେ ମୋତେ ଗୋଟିଏ ଖେଳନା ଭାବି ଧରିବାକୁ ଇଚ୍ଛା କରୁଥିଲା । ପିଲାକୁ ବୋଧଦେବା ପାଇଁ ସେ ମୋତେ ନେଇ ପିଲାଟି ପାଖରେ ରଖିଦେଲେ । ସଙ୍ଗେ ସଙ୍ଗେ ସେ ମୋତେ ଧରି ମୋ ମୁଣ୍ଡକୁ ତା ପାଟିରେ ପୂରାଇବାକୁ ବସିଲା । ମୁଁ ପ୍ରାଣଭୟରେ ଚିତ୍କାର କରି ଉଠିଲି । ମୋ ଚିତ୍କାର ଶୁଣି ପିଲାଟି ଭୟରେ ମୋତେ ଫିଙ୍ଗିଦେଲା । ତଳେ ପଡ଼ିଥିଲେ ନିଶ୍ଚୟ ମୋର ହାତ ଗୋଡ଼ ଭାଙ୍ଗିଯାଇ ଥାଆନ୍ତା । କିନ୍ତୁ ମୁଁ ତଳେ ପଡ଼ିବା ପୂର୍ବରୁ ତାର ମା ନିଜ କାନିକୁ ପାତିଦେଲେ ଓ ମୁଁ ତାହାର ଉପରେ ପଡ଼ିଲି । ତେଣୁ ମୋର କିଛି କ୍ଷତ ହେଲା ନାହିଁ ।

ଖାଇସାରିବା ପରେ କୃଷକ ଗୃହଲକ୍ଷ୍ମୀ ଓ ଝିଅ ଅଟନ୍ତି ମୋତେ ଯତ୍ନନେବାକୁ ତା ସ୍ତ୍ରୀକୁ କହିଦିବାର ମୁଁ ଅନୁମାନ କଲି । ମୋତେ ବଡ଼ କ୍ଳାନ୍ତ ଲାଗୁଥାଏ ଓ ଶୋଇବାର ଇଚ୍ଛା ହେଉଥାଏ । ଗୃହିଣୀ ମୋର ଅବସ୍ଥା ଦେଖି ମୋତେ ନିଜ ଖଟଉପରେ ଶୁଆଇ ଦେଲା ଓ ଖଣ୍ଡିଏ ରୁମାଲ୍ ଆଣି ମୋତେ ଘୋଡ଼ାଇ ଦେଲା । ସେହି ରୁମାଲଟି ଆମ ଦେଶର ଗୋଟିଏ ବଡ଼ ଜାହାଜର ପାଲରୂପେ ସ୍ୱଚ୍ଛନ୍ଦରେ ବ୍ୟବହୃତ ହୋଇପାରନ୍ତା ।

— ୩ —

ଏହି ଗୃହିଣୀଙ୍କର ନଅବର୍ଷର ଝିଅଟିଏ ଥାଏ । ତାର ନାମ ଗ୍ଲମ୍‌ଡାଲକ୍ଲିଚ । ବୟସ ଦୃଷ୍ଟିରେ ତାର ଖୁବ୍ ବୁଦ୍ଧି ଥିଲା । ସୂଚୀ କର୍ମରେ ସେ ବେଶ ନିପୁଣ । ତାର ଖେଳନାଟିକୁ ସେ ବଡ଼ ସୁନ୍ଦର ଭାବରେ ପୋଷାକ ପିନ୍ଧାଇ ଦିଏ । ତା ଖେଳନା ସବାଶେ ଗୋଟିଏ ଖଟିଆ ଥାଏ । ମାଆ ଓ ଝିଅ ଦୁହେଁ ବନ୍ଦୁର କରି ମୋର ରାତିରେ ଶୋଇବା ପାଇଁ ସେହି ଖଟିଆଟିକୁ ବନ୍ଦୋବସ୍ତ କରି ଦେଲେ । ମୁଁ ଏହି ବାମନ ଦେଶରେ ଯେତେଦିନ ଥିଲି, ସେତେଦିନ ପର୍ଯ୍ୟନ୍ତ ଏହି ଖଟିଆକୁ ବ୍ୟବହାର କରିଥିଲି ।

ଝିଅଟି ସେ ଦେଶର ସବୁଠାରୁ ପତଳା କନା ଆଣି ମୋ ପାଇଁ ସାତଟି କମିଜ ଓ ଅନ୍ୟ କେତେକ ପୋଷାକ ସିଲେଇ କରି ଦେଲା । ତଥାପି ସେ କନା ଆମ ଦେଶର ଅଖାଠାରୁ ଅଧିକ ମୋଟ । ସେ ମୋର ପୋଷାକ ପତ୍ର ଧୁଆଧୋଇ କରି ଦେଉଥାଏ ।

ସେହି ଝିଅଟି ମୋତେ ସେମାନଙ୍କ ଦେଶର ଭାଷା ଶିଖାଇଲା । ମୁଁ ଯେଉଁ ଜିନିଷକୁ ଦେଖାଇଦିଏ, ସେ ତାର ନାମ କହିଦିଏ । ଏହିପରି ଅଳ୍ପଦିନ ଭିତରେ ମୁଁ ଅନେକ ପଦାର୍ଥର ନାମ ଶିଖିଗଲି ।

ଉଚ୍ଚତାରେ ସେ ପ୍ରାୟ ମୋ ତୁଳନା ଅପେକ୍ଷା ଛଅଗୁଣ ଅଧିକ ହେବ । କିନ୍ତୁ ତାର ସ୍ୱଭାବ ବଡ଼ ମଧୁର । ସେ ମୋତେ ଗ୍ଲମ୍‌ଡାଲ୍‌କ୍ଲିଚ୍ ନାମ ଦେଇଥିଲା । ମୁଁ ସେ ଦେଶରେ ଏହି ନାମରେ ସୁପରିଚିତ ହୋଇଗଲି । ସେ ଦେଶର ଭାଷାରେ ଗ୍ରିଲ୍‌ଡ୍ରିଗ୍ ଶବ୍ଦର ଅର୍ଥ ହେଉଛି 'ଛୋଟ ମଣିଷ ।'

ଆଖପାଖରେ ପ୍ରଚାର ହୋଇଗଲା ଯେ ମୋର ପ୍ରଭୁ ଗହମକିଆରୀରୁ ଗୋଟିଏ ଅଦ୍ଭୁତ ଜୀବ ପାଇଛି । ସେଇଟି ଦେଖିବାକୁ ଠିକ୍ ମଣିଷପରି ଓ ତାର ଚାଲିଚଳଣି ମଧ୍ୟ ମଣିଷ ପରି । ତାର ଏକ ପ୍ରକାର ଭାଷା ଅଛି । ଅଳ୍ପଦିନ ଭିତରେ ସେ ଆମ ଦେଶର ଭାଷା ମଧ୍ୟ ଶିଖିଗଲାଣି । ସେ ମଣିଷପରି ଦୁଇ ଗୋଡ଼ରେ ଚାଲେ । ତାର ସ୍ୱଭାବ ମଧ୍ୟ ଭଲ; ତାକୁ ଡାକିଲେ ପାଖକୁ ଆସେ ଓ ଯାହା କହିବ ତା କରେ ।

ମୋ ପ୍ରଭୁର ଜଣେ ବନ୍ଧୁ ଦିନେ ଆସି ତାଙ୍କୁ ପରାମର୍ଶ ଦେଲେ ଯେ ମୋତେ ହାଟକୁ ନେଇ ଦେଖାଇଲେ ଭଲ ହେବ । ହାଟଟି ତାଙ୍କର ଘର ଠାରୁ ବାଇଶ ମାଇଲ୍ ଦୂର ଓ ଅଧ ଘଣ୍ଟାକର ବାଟ । ଝିଅଟି ମାଆଠାରୁ ଏହି ପରାମର୍ଶ କଥା ଶୁଣି ବଡ଼ ମନ ଦୁଃଖ କଲା । ସେ ମୋତେ କୋଳରେ ଜାକି କାନ୍ଦିବାକୁ ଲାଗିଲା । ତାର ଭୟ ହେଉଥାଏ ଯେ ହାଟର ଗାଉଁଲି ଲୋକେ ମୋର କୌଣସି କ୍ଷତି କରି ପାରନ୍ତି । ହୁଏତ କିଏ ମୋତେ ଚାପି ମାରି ଦେବ କିମ୍ବା ମୋର ଗୋଡ଼ ହାତ ଭାଙ୍ଗି ଦେବ ।

ମୋର ପ୍ରଭୁ ବନ୍ଧୁଙ୍କ ପରାମର୍ଶ ଅନୁସାରେ ମୋତେ ହାଟକୁ ନେଇଗଲେ । ସାଥିରେ ଝିଅଟି ମଧ୍ୟ ଗଲା । କବାଟଲଗା ଗୋଟିଏ ବାକ୍ସରେ ମୋତେ ରଖା ଯାଇଥାଏ । ମୋ ଦେହକୁ କାଳେ କଷ୍ଟ ହେବ ବୋଲି ସେ ମୋ ପାଇଁ ଗୋଟିଏ ରେଜେଇ ବିଛାଇ ଦେଇଥିଲା । ମୁଁ ଅଧିକାଂଶ ସମୟ ସେଥିରେ ଶୋଇରହେ ।

ଏତେ ଯନ୍ତ୍ର ସଙ୍ଗେ ବାଟରେ ଗଲାବେଳେ ମୁଁ ବଡ଼ ଅଶାନ୍ତି ବୋଧକଲି । ଯେଉଁ ଘୋଡ଼ା ଉପରେ ବସି ଝିଅ ମୋ ସନ୍ଦୁକ ବାକ୍ସଟି ଧରି ଚାଲିଥାଏ ସେ ପାହୁଣ୍ଡକେ ଚାଳିଶ ଫୁଟରୁ କମ ଯାଉ ନ ଥାଏ । ତେଣୁ ଉଠିବା ପଡ଼ିବାରେ ମୋର କଷ୍ଟ ହେଉଥାଏ । ପ୍ରାୟ ଅଧଘଣ୍ଟାକ ଭିତରେ ଆମ୍ଭେମାନେ ହାଟରେ ପହଞ୍ଚିଲୁଁ ।

ମୋର ପ୍ରଭୁ ସେଠାରେ ଗୋଟିଏ ହୋଟେଲ ଭଡ଼ାନେଇ ପ୍ରଦର୍ଶନୀର ଆୟୋଜନ କଲେ । ଜଣେ ଲୋକକୁ କିଛି ପଇସା ଦେଇ ହାଟର ଲୋକଙ୍କୁ ପ୍ରଦର୍ଶନୀ ବିଷୟ ଜଣାଇ ଦେବାକୁ କହିଲେ । ସେ ଲୋକଟି ହାଟର ନାନାସ୍ଥାନରେ ବୁଲି ଚିତ୍କାର କରି କହୁଥାଏ— "ଛଅଫୁଟଉଚ୍ଚ ଗୋଟିଏ ମଣିଷପରି ଜୀବ ପ୍ରଦର୍ଶନୀରେ ଦେଖିବାକୁ ପାଇବେ । ସେ ଆମପରି କଥା କହିବ; ଶହ ଶହ ଖେଳ କୌତୁକ ଦେଖାଇବ ।"

ହୋଟେଲର ଗୋଟିଏ ବଡ଼ ଘରର ଟେବୁଲ ଉପରେ ମୋ ବାକ୍ସ ରଖାଗଲା । ସେ ଘରଟିର ଲମ୍ବ ଓସାର ତିନିଶହ ଫୁଟରୁ ଊଣା ହେବ ନାହିଁ । ମୋର ଯନ୍ତ୍ର ନେବାକୁ ଓ କଅଣ କରିବାକୁ ହେବ କହିବା ପାଇଁ ଝିଅଟି ଗୋଟିଏ ଛୋଟ ଟୁଲ ଉପରେ ଟେବୁଲ ପାଖରେ ଛିଡ଼ା ହୋଇଥାଏ । ମୋର ପ୍ରଭୁ ଦର୍ଶକମାନଙ୍କଠାରୁ ପଇସା ନେଇ ଥରକେ ତିରିଶ ଜଣ ଲେଖାଏଁ ଘର ଭିତରକୁ ଛାଡ଼ୁଥାନ୍ତି । ଝିଅର କହିବା ଅନୁସାରେ ମୁଁ ଟେବୁଲ ଉପରେ ଏପାଖରୁ ସେପାଖକୁ ଚାଲିଲି । ସେ ମୋତେ ଯେଉଁ ପ୍ରଶ୍ନ ପଚାରେ, ତାର ଉତ୍ତର ଦିଏଁ । ଗୋଟିଏ ଦସ୍ତାନାରେ ମୋତେ କିଛି ମଦ ଦିଆଯାଏ । ମୁଁ ସେଥିରୁ ଟିକିଏ ପିଇ ଦର୍ଶକ ମାନଙ୍କର ସ୍ୱାସ୍ଥ୍ୟ କାମନା କରେଁ । ମୋର ଛୁରୀଟି ହାତରେ ଧରି କେତେ କୌଶଳ ମଧ୍ୟ ଦେଖାଏଁ ।

ଦଳକ ପରେ ଦଳେ ଏହିପରି ବାର ଦଳ ଲୋକ ମୋତେ ଦେଖିବାକୁ ଆସିଲେ । ମୋର ଅଦ୍ଭୁତ କାର୍ଯ୍ୟାବଳୀର କଥା ହାଟରେ ବ୍ୟାପିଗଲା । ଲୋକେ କବାଟ ଭାଙ୍ଗି ଘରେ ପଶିବାକୁ ଚେଷ୍ଟା କଲେ । କିନ୍ତୁ ମୋର ପ୍ରଭୁ ତାହା କରାଇ ଦେଲେ ନାହିଁ । କେହି ଯେପରି ମୋତେ ନ ଛୁଅନ୍ତି ସେଥିପାଇଁ ସେ କଡ଼ା ନଜର ଦେଇଥାନ୍ତି । ଲୋକମାନଙ୍କୁ ମୋଠାରୁ ଦୂରରେ ରଖିବା ପାଇଁ ଟେବୁଲ ଚାରିପାଖେ ଗୁଡ଼ିଏ ବେଞ୍ଚ ରଖା ଯାଇଥାଏ ।

ସେଦିନ ମୋ ପ୍ରଭୁଙ୍କର ବେଶ୍ ଲାଭ ହେଲା । ଲାଭରୁ ଲୋଭ ମଧ୍ୟ ହେଲା । ସେ ଦେଶର ବଡ଼ ବଡ଼ ସହରରେ ମୋତେ ଦେଖାଇ ବେଶୀ ରୋଜଗାର କରିବାକୁ ସେ ଇଚ୍ଛା କଲେ । ତାଙ୍କ ଘରଠାରୁ ତିନି ହଜାର ମାଇଲ ଦୂରରେ ସେ ଦେଶର ରାଜଧାନୀ । ମୋତେ ସେଠାରେ ଦେଖାଇବା ପାଇଁ ସେ ସମସ୍ତ ଆୟୋଜନ କଲେ ।

ଆମ୍ଭେମାନେ ଘୋଡ଼ାରେ ବସି ବାହାରିଲୁଁ । ମୋ ପ୍ରଭୁଙ୍କ ଝିଅ ବାକ୍ସଟିକୁ ଅଣ୍ଟାରେ ବାନ୍ଧି ଘୋଡ଼ାରେ ବସିଲା । ମୁଁ ସେ ବାକ୍ସରେ ଶୋଇଥାଏଁ । ମୋର ଅସୁବିଧା ନହେବ ବୋଲି ସେ ତା ଖେଳନାର ବିଛଣାଟି ମୋ ପାଇଁ ପାରିଦେଇଥାଏ ।

ବାଟରେ ୩୦।୪୦ ମାଇଲ ଭିତରେ ଯେତେ ଛୋଟ ସହର ପଡ଼ିବ, ସେ ସବୁରେ ମଧ୍ୟ ମୋତେ ଦେଖାଇବା ପାଇଁ ମୋ ପ୍ରଭୁଙ୍କର ଉଦ୍ଦେଶ୍ୟ ଥାଏ । ଦିନକେ ଆମେ ପ୍ରାୟ ଦେଢ଼ଶ ମାଇଲ ଯାଉଥାଉଁ । ବେଳେବେଳେ ବାକ୍ସ ଭିତରେ ରହିବାକୁ ମୋତେ ଭଲ ଲାଗୁ ନଥାଏ । ବାହାରକୁ ଆସିବାକୁ କହିଲେ ଝିଅଟି ଗୋଟିଏ ଦଉଡ଼ିରେ ମୋତେ ବାନ୍ଧି ହାତରେ ଧରେ । ମୁଁ ବାହାରର ଦୃଶ୍ୟ ଦେଖି ଆନନ୍ଦିତ ହୁଏ । ଏହିପରି ଆମ୍ଭେମାନେ ପ୍ରାୟ ଦୁଇମାସ

ନାଟରେ କଟାଇଲୁଁ । ଏଥି ମଧ୍ୟରେ ମୋତେ ଅନେକ ଗ୍ରାମରେ ଓ ଅଠରଟି ସହରରେ ଦେଖାଯାଇଥିଲା । ଏହାଦ୍ୱାରା ମୋ ପ୍ରଭୁଙ୍କର ଲାଭ ଅଳ୍ପ ହୋଇ ନଥିଲା ।

ଅକ୍ଟୋବର ମାସ ୨୬ ତାରିଖ ଦିନ ଆମେ ରାଜଧାନୀରେ ପହଞ୍ଚିଲୁ । ଏହି ନଗରର ନାମ ଲୋରବ୍ରୁଲ୍‌ଗ୍ରୁଡ଼ । ସେ ଦେଶର ଭାଷାରେ ଏହାର ଅର୍ଥ ହେଉଛି 'ଜଗତର ଗର୍ବ ।' ସେଠାରେ ପହଞ୍ଚିବା ମାତ୍ରେ ମୋର ପ୍ରଭୁ ପ୍ରାୟ ୪୦୦ଫୁଟ ଲମ୍ବ ଗୋଟିଏ ଘର ଭଡ଼ା ନେଲେ । ଷାଠିଏ ଫୁଟ ବ୍ୟାସବିଶିଷ୍ଟ ଗୋଟିଏ ଟେବୁଲ ଅଣାଗଲା । ତା ଧାରରୁ ତିନିଫୁଟ ଉଚ୍ଚ ବାଡ଼ ଦିଆ ହେଲା । ମୋତେ ଏହି ଟେବୁଲ ଉପରେ ଖେଳ ଦେଖାଇବାକୁ ହୁଏ । ଧାରରେ ବାଡ଼ ଥିବାରୁ ମୋର ପଡ଼ିଯିବାର ଆଶଙ୍କା ନ ଥାଏ । ଦିନକେ ଦଶଥର ଖେଳ ଦେଖା ହୁଏ । ଲୋକେ ମୋର କଥାଶୁଣି ଓ କାମଦେଖି ବିସ୍ମୟ ଓ ଆନନ୍ଦ ପ୍ରକାଶ କରି ଚାଲି ଯାନ୍ତି ।

— ୪ —

କେତେ ସପ୍ତାହ ଚାଲିଗଲା । ମୋତେ ପ୍ରତିଦିନ ଏହିପରି ଖେଳ ଦେଖାଇବାକୁ ହେଉଥାଏ । ଏହା ଫଳରେ ମୋର ସ୍ୱାସ୍ଥ୍ୟ ଏକବାରେ ଭାଙ୍ଗିଗଲା । ମୋର ପ୍ରଭୁ ଯେତିକି ବେଶୀ ପଇସା ପାଉଥାନ୍ତି, ସେତିକି ତାଙ୍କର ଲୋଭ ବଢ଼ୁଥାଏ । ମୋର ଦେହ ଶୁଖିଯାଇ ହାଡ଼ ଦେଖାଗଲା । ବୋଧହୁଏ, ମୋର ପ୍ରଭୁ ବୁଝିପାରିଲେ ଯେ ମୁଁ ଆଉ ବେଶୀଦିନ ବଞ୍ଚି ପାରିବି ନାହିଁ । ତେଣୁ ମୋତେ ଦେଖାଇ ଯେତେ ଅର୍ଜ୍ଜନ କରି ହେବ, ସେତେ ଭଲ ।

ସେ ଏହିପରି ବିଚାରୁଥିବା ସମୟରେ ହଠାତ୍ ରାଜଦରବାରରୁ ଜଣେ କର୍ମଚାରୀ ଆସି ମୋର ପ୍ରଭୁଙ୍କୁ ଜଣାଇଲା ଯେ ରାଣୀ ଓ ରାଜ

ଅନ୍ତଃପୁରର ଅନ୍ୟ ରମଣୀମାନେ ମୋତେ ଦେଖିବାକୁ ଇଚ୍ଛା କରିଅଛନ୍ତି । ତେଣୁ ମୋତେ ସେମାନଙ୍କ ରାଜନବରକୁ ଯିବାକୁ ହେବ । ମୋତେ ଯେଉଁମାନେ ଦେଖିଥିଲେ ସେମାନଙ୍କ ଭିତରେ ରାଣୀଙ୍କ ପରିଚାରିକା ମଧ୍ୟରୁ କେତେକ ଥିଲେ । ସେମାନେ ମୋର ସୌନ୍ଦର୍ଯ୍ୟ, କାର୍ଯ୍ୟକଳାପ ଏବଂ ବୁଦ୍ଧି ବିଷୟ ରାଜନବରେ ପ୍ରଚାର କରି ଦେଇଥିଲେ ।

ରାଣୀ ଓ ତାଙ୍କର ପରିଚାରିକାମାନେ ମୋର ବ୍ୟବହାରରେ ଅତ୍ୟନ୍ତ ସନ୍ତୁଷ୍ଟ ହୋଇଗଲେ । ମୋର ଦେଶ, ମୋର ଦେଶଭ୍ରମଣ ପ୍ରଭୃତି ବିଷୟରେ ରାଣୀ ମୋତେ କେତେକ ପ୍ରଶ୍ନ କଲେ । ମୁଁ ସଂକ୍ଷେପରେ ଅଥଚ ସ୍ପଷ୍ଟଭାବରେ ସେ ସବୁର ଉତ୍ତର ଦେଲି । ଶେଷରେ ମୋତେ ସେ ରାଜ ସଭାରେ ସ୍ଥାନ ଦେବାକୁ ଇଚ୍ଛା ପ୍ରକାଶ କରି ମୋର ମତ ପଚାରିଲେ । ମୁଁ କହିଲି—ତାହା ମୋର ପରମ ସୌଭାଗ୍ୟ । ଯଦି ମୋର ପ୍ରଭୁ ଅନୁମତି ଦିଅନ୍ତି ତେବେ ରାଜନବରରେ ରହିବାକୁ ମୁଁ ସମ୍ପୂର୍ଣ୍ଣ ଇଚ୍ଛୁକ ।

ତହୁଁ ରାଣୀ ମୋର ପ୍ରଭୁଙ୍କୁ ପଚାରିଲେ—ତୁମ୍ଭେ ଏହାକୁ ବିକ୍ରୀ କରିବ କି ? ଏଥିପାଇଁ ଉପଯୁକ୍ତ ମୂଲ୍ୟ ଦିଆଯିବ ।

ମୋର ପ୍ରଭୁ ଭାବିଥିଲେ ଯେ ଦୁଇ ତ ମାସକ ଭିତରେ ମୋର ମୃତ୍ୟୁ ଘଟିବ । ତେଣୁ ସେ ମନେ ମନେ ଆନନ୍ଦିତ ହୋଇ ହଜାରେ ସ୍ୱର୍ଣ୍ଣ ମୁଦ୍ରା ପାଇଲେ ମୋତେ ଦେବେ ବୋଲି କହିଲେ । ରାଣୀ ତତ୍କ୍ଷଣାତ୍ ଜଣେ କର୍ମଚାରୀକୁ ହଜାରେ ସ୍ୱର୍ଣ୍ଣମୁଦ୍ରା ଦେବାକୁ ଆଦେଶ ଦେଲେ ।

ମୋତେ କିଣି ସାରିବାପରେ ମୁଁ ରାଣୀଙ୍କୁ ଜଣାଇଲି- ଏତେ ଦିନ ହେଲା ଏହି ବାଳିକାଟି ମୋର ସେବା ଓ ଯତ୍ନ କରି ଆସିଅଛି । ସେ ମୋତେ ଏଦେଶର ଭାଷା ଓ ରୀତି ନୀତି ଶିଖାଦେଇଛି । ଅନୁଗ୍ରହ

କରି ତାଙ୍କୁ ଯଦି ରାଜନଗରରେ ଖଣ୍ଡିଏ ଗୃହକର ଦିଆଯାଏ ତେବେ ସେ ମୋର ଭଲମନ୍ଦ ବୁଝିବ । ରାଣୀ କୃଷକର ମତ ପଚାରିବାରୁ ସେ ଆନନ୍ଦରେ ଏ ପ୍ରସ୍ତାବରେ ସ୍ୱୀକୃତ ହେଲା । ବାଳିକାଟି ମଧ୍ୟ ରାଜନଗରରେ ରହି ମୋ କଥା ବୁଝିବ ବୋଲି ଆନନ୍ଦରେ ଅଥୟ ହୋଇ ପଡ଼ିଲା ।

ରାଣୀ ନିଜହାତରେ ମୋତେ ଧରି ରାଜାଙ୍କ ପାଖେ ଉପସ୍ଥିତ ହେଲେ । ସେ ରାଜାଙ୍କ ଟେବୁଲଉପରେ ମୋତେ ଧୀରେ ରଖିଦେଇ ମୋର ସମସ୍ତ ଘଟନା ତାଙ୍କ ନିକଟରେ ପ୍ରକାଶ କରିବାକୁ କହିଲେ ।

ରାଜା ଅବଶ୍ୟ ଜଣେ ବିଦ୍ୱାନ୍ ଲୋକ । ମୁଁ ସିଧା ଠିଆ ହୋଇ ଟେବୁଲ ଉପରେ ଚାଲୁଥିବାର ଦେଖି, ସେ ପ୍ରଥମେ ମନେ କଲେ ଯେ ମୁଁ ଗୋଟିଏ ଯନ୍ତ୍ରବିଶିଷ୍ଟ ଖେଳନା । କିନ୍ତୁ ମୋଠାରୁ ଯୁକ୍ତି ଯୁକ୍ତ କଥାବାର୍ତ୍ତା ଶୁଣିବା ପରେ ତାଙ୍କର ଭ୍ରାନ୍ତ ଧାରଣା ଦୂର ହୋଇଗଲା ।

ରାଣୀଙ୍କ ଆଦେଶରେ ମୋର ଶୋଇବା ଓ ରହିବା ପାଇଁ ଗୋଟିଏ ଛୋଟ ବାକ୍ସ ତିଆରି ହେଲା । କାରିଗରକୁ ମୁଁ ପରାମର୍ଶ ଦେଇ ଏଇଟି ତିଆରି କରାଇଲି । ବାକ୍ସଟିର ଲମ୍ବ ଓ ଓସାର ୧୬ ଫୁଟ ଲେଖାଏଁ ଓ ଉଚ୍ଚ ୧୨ ଫୁଟ ଥିଲା । ସେଥିରେ କେତୋଟି ଝରକା ଥାଏ । ଘରରେ କବାଟ ଲାଗିଥିବାରୁ ତାକୁ ସହଜେ ଟେକି ବିଛଣା ଇତ୍ୟାଦି ପକାଇ ହୁଏ ।

ଛୋଟ ଛୋଟ ଜିନିଷ ତିଆରି କରିବାରେ ଜଣେ କାରିଗରର ସୁନାମ ଥାଏ । ତାଦ୍ୱାରା ମୋ ପାଇଁ ଦୁଇଟି ଚୌକି ଓ ଖୋପଲଗା ଦୁଇଟି ଟେବୁଲ କରାଇ ନେଲି । ମୋ ବାକ୍ସର ତଳ, କାନ୍ଥ ଓ ଉପର ସବୁଆଡ଼େ ଗଦି ଖଞ୍ଜାଯାଇଥାଏ । ତେଣୁ କେହି ଅସାବଧାନରେ ବାକ୍ସକୁ ହଲାଇ ଦେଲେ ପଡ଼ିଯାଇ ମୁଁ ଆଘାତ

ଯାଇବାର ଅଣକ୍ଷା ନ ଥିଲା । ରାଣୀ ଅତି ସୂକ୍ଷ୍ମ ରେସମକନା ଅଣାଇ ମୋର ପୋଷାକ ତିଆରି କରାଇ ଦେଲେ । ତଥାପି ତାହା ଆମଦେଶର କମ୍ବଳଠାରୁ ଅଧିକ ମୋଟ । ଏ ପୋଷାକ ମୋତେ ଖୁବ ଭାରି ଲାଗୁଥାଏ; କିନ୍ତୁ କ୍ରମେ ଅଭ୍ୟାସରେ ପଡ଼ିଗଲା ।

ରାଣୀ ମୋତେ ଖୁବ ଆଦର କରୁଥାନ୍ତି । ମୋତେ ପାଖରେ ନ ରଖିଲେ ଖାଇ ବସନ୍ତି ନାହିଁ । ରାଣୀଙ୍କ ଖାଇବା ଟେବୁଲ ଉପରେ ମୋର ଛୋଟ ଚୌକି ଓ ଟେବୁଲ ପଡ଼େ । ପାଖରେ ଗ୍ଲମ୍‌ଡାଲକ୍ଲାଚ ଗୋଟିଏ ଟୂଲ ଉପରେ ଛିଡ଼ା ହୋଇ ମୋତେ ଜଗି ରହୁଥାଏ ।

ମୋ ପାଇଁ ସାରେ ରୂପାର ବାସନ ଓ ଅନ୍ୟାନ୍ୟ ଜିନିଷ ଯୋଗାଡ଼ କରାଯାଇଥିଲା । ରାଣୀଙ୍କ ବ୍ୟବହାର୍ଯ୍ୟ ଜିନିଷ ନିକଟରେ ମୋ ଜିନିଷ ଗୁଡ଼ିକ ଖେଳନା ପରି ବୋଧ ହେଉଥାଏ । ଗ୍ଲମ୍‌ଡାଲକ୍ଲାଚ ସେଗୁଡ଼ିକ ଗୋଟିଏ ରୂପାଡବାରେ ପୁରାଇ ତା ପକେଟରେ ରଖିଥାଏ । ଦରକାର ବେଳେ ମୋତେ ଦିଏ ।

ରାଣୀ ମୋ ଥାଳିରେ ଖଣ୍ଡିଏ ମାଂସ ରଖିଦିଅନ୍ତି । ମୁଁ ସେଥିରୁ କାଟି କାଟି ଖାଏଁ । ରାଣୀ ଥରକେ ଯେତେ ମାଂସ ପାଟିକି ନିଅନ୍ତି, ସେତିକିରେ ଆମଦେଶର ଦଶ ବାରଜଣଙ୍କର ପେଟ ପୂରିଯିବ । ସେ ଥରକେ ଯେତିକି ରୁଟି ପାଟିକି ନିଅନ୍ତି ସେତିକି ଆମର ବଡ଼ ରୁଟିର ଦଶଗୁଣରୁ ଅଧିକ ହେବ । ତୋକକରେ ସେ ପ୍ରାୟ ୧୦ ଟିଣ ପାଣି ପିଅନ୍ତି । ସେ ଯେଉଁ ଛୁରୀରେ ମାଂସ କାଟିଖାଅନ୍ତି, ତାର ଆକାର ଗୋଟିଏ ଦାଆର ତିନି ଗୁରଗୁଣ ହେବ । ତାଙ୍କର କଣ୍ଟା ଚାମଚ ପ୍ରଭୃତି ସେହି ଅନୁପାତରେ ପ୍ରକାଣ୍ଡ ଥିଲା ।

ରାଜା ମୋ ସହିତ ଗଳ୍ପ କରିବାକୁ ଭଲ ପାଉଥିଲେ । ଆମ-ଦେଶର ରୀତି ନୀତି, ଧର୍ମ, ଆଇନ, ଶାସନ, ଜ୍ଞାନ ବିଜ୍ଞାନ ଇତ୍ୟାଦି

ସ୍ୱାଭାବିକ ଭାବରେ ସେ ମୋତେ ଅନେକ କଥା ପଚାରୁଥିଲେ । ମୁଁ ଯଥାସାଧ୍ୟ ସେ ସବୁ ବୁଝାଇ ଦଏଁ ।

ଏଠାରେ ମୋର ଜୀବନ ବେଶ ସୁଖରେ କଟିଥାନ୍ତା; କିନ୍ତୁ ଏହି ଅଦ୍ଭୁତ ମାନବ ରାଜ୍ୟରେ ମୋର କ୍ଷୁଦ୍ର ଆକାର ହେତୁ ମୋତେ ଅନେକ ବିପଦର ସମ୍ମୁଖୀନ ହେବାକୁ ପଡ଼ୁଥିଲା ।

ଦିନେ ବାଳିକାଟି ବାକ୍ସଟି ଘରଭିତରେ ରଖିଦେଇ ବଗିଚାକୁ ଯାଇଥିଲା । ଏଥି ମଧ୍ୟରେ ମାଳୀର ଗୋଟିଏ ଛୋଟ କୁକୁର ମୋର ଗନ୍ଧ ପାଇ ଘରେ ଉପସ୍ଥିତ । ସେ ମୋତେ ଦାନ୍ତରେ ଧରି ମାଳି ପାଖକୁ ନେଇ ରଖିଦେଲା । ଭାଗ୍ୟକୁ ମୋର କିଛି କ୍ଷତ ହୋଇ ନାହିଁ ।

ଆଉଦିନେ ଗୋଟିଏ ଚିଲ ମୋତେ କୌଣସି ପୋକ ମନେ କରି ମୋ ଉପରେ ଝାମ୍ପ ମାରିଲା । ମୁଁ ସାହସ ସହକାରେ ମୋ ଛୋଟ ଖଣ୍ଡାଟି ବାହାର କରି ଗୋଟାଏ ବୁଦାତଳେ ଲୁଚିଗଲି । ନଚେତ୍ ସେଦିନ ମୋର ପ୍ରାଣ ଯାଇଥାନ୍ତା ।

ମୁଁ ଦିନେ ମୋର ସ୍ୱଦେଶ ଓ ଆତ୍ମୀୟ ସ୍ୱଜନଙ୍କ କଥା ଚିନ୍ତା କରି କରି ଯାଉଥିଲି । ଆଗରେ ଗୋଟାଏ ଶାମୁକା ଖୋଳ ପଡ଼ିଥିଲା । ଅନ୍ୟ ମନସ୍କ ଭାବରେ ଯାଉଯାଉ ତାକୁ ଝୁଣ୍ଟି ପଡ଼ିଗଲି । ମୋର ଗୋଟାଏ ଗୋଡ଼ ଜଖମ ହୋଇଗଲା ।

ଏହିପରି ମୋ ଜୀବନ ଉପରେ ଅନେକ ବିପଦ ଘଟି ଯାଇଥିଲା ।

କଥା ପ୍ରସଙ୍ଗରେ ରାଣୀ ମୋଠାରୁ ଶୁଣି ପାରିଲେ ଯେ ଆମ ଦେଶରେ ସେ ଦେଶପରି ଜାହାଜ ଅଛି । ଆମ ଜାହାଜ ମଧ୍ୟ ପାଲ ଦ୍ୱାରା ଚଳେ । ନାବିକମାନେ ହାତ ବା ଅହ୍ଲମାରି ଜାହାଜ ଚଳାଇ

ପାରନ୍ତି । ତହୁଁ ତାଙ୍କର ଗୋଟାଏ ଖିଆଲ ହେଲା । ସେ ମୋପାଇଁ ଗୋଟିଏ ଛୋଟ ନୌକା କରାଇ ଦେଲେ ।

ଜଣେ କୌଶଳୀ କାରିଗର ଦଶ ଦିନ ଲାଗି ଗୋଟିଏ ନୌକା ତିଆରି କରିଦେଲା । ସେଥିରେ ଆମ ଦେଶର ୧୦ ଜଣ ଲୋକ ସ୍ୱଚ୍ଛନ୍ଦରେ ବସି ପାରନ୍ତେ ।

ରାଣୀଙ୍କ ଆଦେଶରେ ଗୋଟିଏ କାଠର ପାତ୍ର ତିଆରି ହେଲା । ସେଇଟିର ଆକାର ଅଦ୍ଭୁତ ଯେତେପରି । ତାର ଲମ୍ବ ୩୦୦ ଫୁଟ, ଓସାର ୫୦ ଫୁଟ ଓ ଉଚ୍ଚତା ୮ ଫୁଟ । ରାଜନବରରେ ଗୋଟିଏ ଘରେ ଏହି ପାତ୍ରଟି ରଖାଯାଇ ଜଳପୂର୍ଣ୍ଣ କରାଗଲା । ଏଥିରେ ମୋର ନୌକାଟି ଚଳାଇ ଅନେକ ସମୟରେ ମୁଁ ଆନନ୍ଦ ଅନୁଭବ କରୁଥିଲି । ରାଣୀ ଓ ତାଙ୍କର ପରିଚାରିକାମାନେ ମୋର ନୌକାଚାଳନା ଦେଖି ମୋ ଅପେକ୍ଷା କମ ଆନନ୍ଦ ଅନୁଭବ କରୁ ନ ଥିଲେ । ବେଳେବେଳେ ମୁଁ ନୌକାର ପାଲ ବାନ୍ଧି ଦଏଁ; ରାଜ ଅନ୍ତଃପୁରର ରମଣୀମାନେ ପଙ୍ଖା ପବନରେ ନୌକାକୁ ଚଳାଇ ଦଅନ୍ତି । ଅଉ କେତେବେଳେ ଚାକରମାନେ ଫୁଙ୍କି ନୌକାକୁ ଭସାଇ ଦଅନ୍ତି । ମୋର ନୌବିହାର ଶେଷ ହେଲେ, ପାତ୍ରରୁ ଡଙ୍ଗାଟିକୁ ଆଣି କାନ୍ଥରେ ଗୋଟାଏ ଲହିାକଣ୍ଟାରେ ଟାଙ୍ଗି ଦଅନ୍ତି ।

ରାଜ ପ୍ରାସାଦରେ ଜଣେ କାରିଗରଙ୍କର ଗୋଟିଏ ମାଙ୍କଡ଼ ଥାଏ । ଏହି ମାଙ୍କଡ଼ଟି ମୋର ଅଶେଷ ବିପତ୍ତିର କାରଣ ହୋଇଥିଲା ।

ଦିନେ ଗ୍ଲୁମ୍‌ଡାଲକ୍ଲିଚ ମୋତେ ବାକ୍ସ ସହିତ ଘରେ ରଖି ବାହାରକୁ ଯାଇଥିଲା । ପାଗ ବଡ଼ ଗରମ ଥିବାରୁ ମୋ ବାକ୍ସର ଦ୍ୱାର ଝରକା ଖୋଲା ଥାଏ । ଘରର କବାଟ ଝରକା ମଧ୍ୟ ଖୋଲା ଥାଏ । ବାକ୍ସ ଭିତରେ ମୁଁ ଟେବୁଲ ପାଖରେ ବସିଛି, ଏହି ସମୟରେ ଦେଖିଲି ଯେ ସେ ମାଙ୍କଡ଼ଟା ଆସି ଘରକବାଟ ବାଟେ

ଭିତରକୁ ଗୁହୁଁଛି । କିଛି ସମୟ ଯାଏ ସେ ଘର ଭିତରକୁ ଏଣେ
ତେଣେ ଗୁହିଁ ବାକ୍ସ ଭିତରେ ମୋତେ ଦେଖି ପାରିଲା । ମୋତେ
ଧରିବା ପାଇଁ ମୋ ବାକ୍ସର ଝୁଅରିବାଟେ ତା ହାତ ପୂରାଇଲା ।
ମୁଁ ବାକ୍ସ ଭିତରେ ଏପାଖରୁ ସେ ପାଖକୁ ଦଉଡ଼ି ଆତ୍ମରକ୍ଷା
କରିବାକୁ ଚେଷ୍ଟା କଲି । ଶେଷରେ ବିରାଡ଼ି ମୂଷାକୁ ଧରିଲା ପରି ମୁଁ
ପିନ୍ଧିଥିବା କୋଟର ଗୋଟାଏ ଅଂଶ ଧରି ସେ ମୋତେ ବାକ୍ସଭିତରୁ
ଟାଣି ଆଣିଲା । ସେ ଗୋଟାଏ ହାତରେ ମୋତେ ଧରି ଆର ହାତରେ
ମୋର ମୁହଁକୁ ଧୀରେ ଧୀରେ ଆଉଁସୁଥାଏ ।



ମୁଁ ଦେଖିଲି ଯେ ଏପରି ବିରାଟ ଜନ୍ତୁ ପାଖରେ ବଳପ୍ରୟୋଗ
କରି ଖସି ଯିବାର ଉପାୟ ନାହିଁ । ତେଣୁ ସେ ମୋତେ ଆଉଁସିବା

ବେଳେ ମୁଁ ଚୁପଚାପ୍ ରହିଥାଏଁ । ବୋଧହୁଏ ସେ ମନେ କରୁଥିଲା ଯେ, ମୁଁ ଗୋଟିଏ ମାଙ୍କଡ଼ଛୁଆ । ମୋତେ ବନ୍ଧନରୁ ମୁକ୍ତ କରୁଛି ବୋଲି ସେ ଆନନ୍ଦିତ ହେଉଥାଏ ।

ଏହି ସମୟରେ ବାହାରେ ଘରର ଦ୍ୱାର ପାଖରେ ଶବ୍ଦ ଶୁଣାଗଲା । ମାଙ୍କଡ଼ଟି ମୋତେ ଗୋଟିଏ ହାତରେ ଧରି ଡେଇଁପଡ଼ି ଘରର ଝରକା ବାଟେ ପଳାଇଲା । ସେ ମୋତେ ଧରି ଡେଇଁ ଡେଇଁ ଗୋଟିଏ ଘର ଉପରେ ବସିଲା । ଗ୍ଲୁମ୍‌ଡାଲ୍‌କ୍ଲିଚ ଏହି ସମୟରେ ପହଞ୍ଚିଗଲା । ମୋର ଏ ଦୁର୍ଦ୍ଦଶା ଦେଖି ସେ ଚିତ୍କାର କରି ଉଠିଲା । ରାଜ ପ୍ରାସାଦର ଚାକରମାନେ ଧାଇଁ ଆସିଲେ । କେତେ ଜଣ ନିଶୁଣି ଆଣିବାକୁ ଦଉଡ଼ିଗଲେ ।

ମାଙ୍କଡ଼କୁ ଭୟ ଦେଖାଇବା ପାଇଁ କେହି କେହି ପଥର ପିଙ୍ଗିଲେ । କିନ୍ତୁ ଗ୍ଲୁମ୍‌ଡାଲ୍‌କ୍ଲିଚ ସେମାନଙ୍କୁ ପଥର ପିଙ୍ଗିବାକୁ ମନା କରିଦେଲା । ଦୈବାତ୍ ଗୋଟିଏ ପଥର ମୋ ଦେହରେ ବାଜିଥିଲେ ସଙ୍ଗେ ସଙ୍ଗେ ମୋର ପ୍ରାଣ ବାହାରି ଯାଇଥାନ୍ତା ।

ଯାହା ହେଉ ନିଶୁଣି ଆଣି କେତେଜଣ ଛାତ ଉପରକୁ ଉଠିବାର ଚେଷ୍ଟାକଲେ । ଏହା ଦେଖି ମାଙ୍କଡ଼ ମୋତେ ଛାତଉପରେ ଛାଡ଼ି ଦେଇ ପଳାଇଲା । ମୁଁ ବସି ରହିଲି । ତଳକୁ ଚାହିଁଲାକ୍ଷଣି ମୋର ମୁଣ୍ଡ ଘୂରି ଯାଉଥାଏ । ପବନର ବେଗରେ କାଳେ ଉଡ଼ିଯିବି ବୋଲି ଭୟହେଉଥାଏ । ଯାହାହେଉ ଜଣେ ଚାକର ଚୋଟା ଛାତ ଉପରକୁ ଯାଇ ମୋତେ ତା କୋଟ ପକେଟରେ ପୂରାଇ ତଳକୁ ନେଇ ଆସିଲା ।

ମୋର ଜୀବନ ରହିଗଲା; ମାତ୍ର ମୁଁ ପନ୍ଦର ଦିନ ଯାଏ ବିଛଣାରୁ ଉଠି ପାରି ନ ଥିଲି । ରାଜା ଓ ରାଣୀ ବାରମ୍ବାର ଆସି

ମୋର ଯତ୍ନ ନେଉଥାଆନ୍ତି । ରାଜାଙ୍କ ଅଦେଶରେ ଜଣାଇ ଦିଆଗଲା ଯେ, ରାଜନବର ନିକଟରେ କେହୁ ମାକଡ଼ ରଖି ପାରିବେ ନାହିଁ । ମୁଁ କ୍ରମେ ସୁସ୍ଥ ହେଲି ।



[ରାଜା ଓ ଗଲିଭର ]

ରାଜା ବଡ଼ ସଙ୍ଗୀତପ୍ରିୟ । ସମୟେ ସମୟେ ରାଜ ପ୍ରାସାଦରେ ଗୀତବାଦ୍ୟର ଅୟୋଜନ ହୁଏ । ମୁଁ ବାକ୍ସ ଭିତରେ ସେଠାରେ

ରଖାଯାଇଥାଏ । ଏଡ଼େ ଶବ୍ଦ ହୁଏ ଯେ ମୁଁ ସେଥିରୁ ତାଳ ମାନ କିଛୁ ବୁଝିପାରେ ନାହିଁ ! ମୋର କାନ ବଧୀର ହେଲାପରି ଜଣାଯାଏ । ବୋଧହୁଏ ଆମ ଇଂଲଣ୍ଡର ସମଗ୍ର ସୈନ୍ୟ ବାହିନୀ ତାଙ୍କ ଡ୍ରମ ଓ ବିଗୁଲ ଏକସଙ୍ଗରେ ବଜାଇଲେ ଏତେ ଉଚ୍ଚଶବ୍ଦ ହୋଇ ପାରନ୍ତା ନାହିଁ ।

ମୁଁ ଟିକିଏ ବାଦ୍ୟ ବଜାଇ ଶିଖିଥିଲି । ରାଜାଙ୍କୁ ଆମଦେଶର ବାଦ୍ୟ ଶୁଣାଇବା ପାଇଁ ଥରେ ମୋର ଇଚ୍ଛା ହେଲା । କିନ୍ତୁ ମୋ ପାଇଁ ଉପଯୁକ୍ତ ଶ୍ରେଷ୍ଠ ବାଦ୍ୟଯନ୍ତ୍ର ମିଳିବ କାହୁଁ ? ଗ୍ଲୁମଡାଲକ୍ଲିଚର ବୀଣାପରି ଗୋଟିଏ ବାଦ୍ୟଯନ୍ତ୍ର ଥିଲା । ରାଣୀଙ୍କ ଆଦେଶରେ ଜଣେ ଶିକ୍ଷକ ତାକୁ ଗୀତବାଦ୍ୟ ଶିଖାଇବାକୁ ଆସୁଥିଲେ । ମାତ୍ର ତାର ବୀଣାଟି ୬୦ ଫୁଟ ଲମ୍ବ । ତାକୁ ବ୍ୟବହାର କରିବା ମୋ ପକ୍ଷରେ ଅସମ୍ଭବ । ଯାହା ହେଉ ମୁଁ ଗୋଟିଏ ବାଦ୍ୟଯନ୍ତ୍ର ତିଆରି କରି ରାଜାଙ୍କୁ ଇଂରେଜୀ ବାଦ୍ୟ ଶୁଣାଇଥିଲି ।

ରାଜା ଅନେକ ସମୟରେ ମୋ ସଙ୍ଗେ କଥାବାର୍ତ୍ତା କରନ୍ତି । ତାଙ୍କ କଥାରୁ ବୁଝିଲି ଯେ, ସେ ଆମ ଦେଶ ଏପରିକି ସମଗ୍ର ଇଉରୋପ ଓ ପୃଥିବୀର ଅନ୍ୟ ଦେଶମାନଙ୍କୁ ଘୃଣା ଦୃଷ୍ଟିରେ ଦେଖନ୍ତି । ଦିନେ ମୁଁ ତାଙ୍କୁ କହିଲି—ଆପଣଙ୍କ ପରି ଜଣେ ବୁଦ୍ଧି-ମାନ ଲୋକ ପକ୍ଷରେ ଏପରି ଧାରଣା ପୋଷଣ କରିବା ବିସ୍ମୟର କଥା । ଶରୀରର ପରିମାଣ ସଙ୍ଗେ ବୁଦ୍ଧିର ପରିମାଣ ବୃଦ୍ଧି ପାଇ ନ ଥାଏ । ବରଂ ଆମ ଦେଶରେ ଦେଖାଯାଏ ଯେ ଡେଙ୍ଗା ଲୋକ-ମାନଙ୍କର ବୁଦ୍ଧି କମ । ଅନ୍ୟଜୀବଙ୍କ ଭିତରେ ମଧ୍ୟ ତାହାହିଁ ଦେଖାଯାଏ । ପିମ୍ପୁଡ଼ି ବା ମହୁମାଛି କେତେ ଶ୍ରେଷ୍ଠ ଜୀବ । କିନ୍ତୁ ଅଧ୍ୟବସାୟ, ବୁଦ୍ଧି, କୌଶଳ ପ୍ରଭୃତିରେ ସେମାନେ ବଡ଼ ବଡ଼

ଜୀବଙ୍କଠାରୁ ଶ୍ରେଷ୍ଠ । ଆପଣଙ୍କ ଶରୀର ତୁଳନାରେ ମୋର ଶରୀର ଅତି କ୍ଷୁଦ୍ର ସତ୍ୟ; ତଥାପି ମୋର ବିଶ୍ୱାସ, ମୁଁ ଆପଣଙ୍କର କିଛି ନା କିଛି ଉପକାର କରି ପାରିବି ।

ଏକଥା ଶୁଣି ରାଜାଙ୍କର ମୋପ୍ରତି ଧାରଣା ବଦଳି ଯାଇଥିଲା ବୋଲି ମନେ ହୁଏ । ରାଜାମାନେ ସାଧାରଣତଃ ନିଜଦେଶ, ନିଜର ରୀତିନୀତି ଓ ନିଜର ଶାସନ ପଦ୍ଧତି ସର୍ବୋତ୍କୃଷ୍ଟ ମନେ କରିଥାନ୍ତି । କିନ୍ତୁ ବ୍ରବଡିଙ୍ଗନାଗର ରାଜା ମୋ କଥା ଶୁଣିଲା ପରେ କହିଲେ—ଅଚ୍ଛା, ମୋତେ ତମ ଇଂଲଣ୍ଡର ଶାସନ ବିଷୟରେ ଯାହା ଜାଣ କହିବ । ସେଥିରେ କିଛି ଭଲ ଥିଲେ ଆମେ ତାର ଅନୁକରଣ କରିବୁ ।

— ୪ —

ମୋ ମନରେ ବିଶ୍ୱାସ ଥାଏ ଯେ ଦିନେ ନା ଦିନେ ମୁଁ ସ୍ୱଦେଶକୁ ବାହୁଡ଼ି ଯିବି । କିନ୍ତୁ ସେ ସୁଯୋଗ ଯେ ଏତେ ଶୀଘ୍ର ମିଳିବ ତାହା ଜାଣି ନଥିଲି ।

ସେ ଦେଶରେ ମୋର ରହିବା ପ୍ରାୟ ଦୁଇବର୍ଷ ହୋଇ ଯାଇଥିଲା । ତୃତୀୟବର୍ଷର ଆରମ୍ଭରେ ଗ୍ଲୁମ୍‌ଡାଲ୍‌କ୍ଲିଚ ସହିତ ମୁଁ ରାଜାଙ୍କ ଗହଣରେ ରାଜ୍ୟର ଦକ୍ଷିଣ ଉପକୂଳ ଅଞ୍ଚଳକୁ ଯାଉଥିଲି । ମୁଁ ମୋ ବାକ୍ସ ଭିତରେ ଥାଏଁ । ଗୃହକରମାନେ ବାକ୍ସ ଟେକି ନେବା ବେଳେ ଓ ଘୋଡ଼ା ଉପରେ ବାକ୍ସକୁ ଧରି ଯିବା ବେଳେ ମୋ ଦେହ ହଲଚଲ ହେବାରୁ ବଡ଼ କଷ୍ଟ ହୁଏ । ତେଣୁ ମୁଁ ଗୋଟିଏ କନାର ଦୋଲି କରାଇଥିଲି । ସେଇଟି ରେଶମ ଦଉଡ଼ି ଦ୍ୱାରା ଘରର ଚୂଡ଼କଣରେ ବନ୍ଧା ହୋଇଥାଏ । ସେଥିରେ ଶୋଇ

ରହୁଲେ, ବାକ୍ସ ହଲଚଲ ହେଲେ ସୁଦ୍ଧା ମୋ ଦେହକୁ ବାଧେ ନାହିଁ ।

ସେଥରକ ଯିବାବେଳେ ମୁଁ ସେହିପରି ଦୋଳରେ ଶୋଇ ଶୋଇ ଗଲି । ଆମର ବାଟ ସରିଗଲା; ମାତ୍ର ସେତେବେଳକୁ ମୋତେ ଓ ଗ୍ଲୁଣ୍ଡ୍ରଲକ୍ଲିଚକୁ ବଡ଼ ବାଧା ଲାଗୁଥାଏ । ମୋର ସାମାନ୍ୟ ସର୍ଦ୍ଦି ହୋଇଥାଏ; କିନ୍ତୁ ଝିଅଟି ଏକବାରେ ଶଯ୍ୟାଗତ । ରାଜାଙ୍କୁ ଜଣାଇଲି—"ମହାରାଜ, ମୋର ଦେହ ଭଲ ନାହିଁ । ସମୁଦ୍ରକୂଳରେ ଟିକିଏ ବୁଲିଆସିଲେ ଭଲ ଲାଗିବ ବୋଲି ଆଶା ।" ରାଜା ଜଣେ ଚାକରକୁ ଆଦେଶ ଦେବାରୁ ସେ ବାକ୍ସ ସହିତ ମୋତେ ସମୁଦ୍ରକୂଳକୁ ନେଇଗଲା ।

ଚାକର ପିଲାଟି ସମୁଦ୍ରକୂଳରେ ପହଞ୍ଚିବାରୁ ମୁଁ ଦୋଳରେ ଶୋଇ ରହିଲି । ବାକ୍ସର ଝରକା ବନ୍ଦ ଥାଏ । ଅଳ୍ପ ସମୟ ମଧ୍ୟରେ ମୋତେ ନିଦ ହୋଇଗଲା । ଏଥି ମଧ୍ୟରେ ଚାକରଟି ଟିକିଏ ବୁଲି ବାହାରିଗଲା । ବୋଧହୁଏ କୌଣସି ବିପଦର ଆଶଙ୍କା ସେ କରି ପାରି ନ ଥିଲା ।

ମୋ ବାକ୍ସକୁ ନେବା ଆଣିବା କରିବାର ସୁବିଧା ପାଇଁ ତା ଉପରେ ଗୋଟିଏ କଡ଼ାରେ ଦଉଡ଼ିଟିଏ ବନ୍ଧା ହୋଇଥିଲା । ତାକୁ କିଏ ହଠାତ୍ ଟାଣିବାରୁ ମୋର ନିଦ ଭାଙ୍ଗିଗଲା । ମୁଁ ଉଠିପଡ଼ି ଝରକା ଖୋଲି ଚାହିଁଲି । ଚାରିପାଖେ ଶୂନ୍ୟ ଆକାଶ ଛଡ଼ା କିଛି ଦେଖିପାରିଲି ନାହିଁ । କେବଳ ମୋ ମୁଣ୍ଡ ଉପରେ କୌଣସି ପକ୍ଷୀର ଡେଣାର ଶବ୍ଦ ଶୁଣାଯାଉଥାଏ । ଏବେ ମୁଁ ଜାଣିପାରିଲି ଯେ ଗୋଟିଏ ପ୍ରକାଣ୍ଡ ଈଗଲପକ୍ଷୀ ମୋ ବାକ୍ସର କଡ଼ାକୁ ଥଣ୍ଟରେ ଧରି ଉଡ଼ି ଯାଉଛି । ବୋଧହୁଏ ସେ ବାକ୍ସଟିକୁ ଗୋଟିଏ କଇଁଛ

ମନେ କର ତାକୁ ତଳେ ଫିଙ୍ଗି ମାଂସ ଖାଇବ ବୋଲି ମନେ କରିଥିଲା ।



ଏଥି ମଧ୍ୟରେ ତଳୁ ଢେଢେର ଶବ୍ଦ ଶୁଣିବାକୁ ପାଇଲି । ଲୋକେ ଇଗଲକୁ ଭୟ ଦେଖାଇବା ପାଇଁ ସେପରି ଶବ୍ଦ କରୁଥିବା ସମ୍ଭବ । କିଛି ସମୟ ପରେ ବାକ୍ସଟି ସିଧା ତଳକୁ ଖସୁଥିବାର ମୁଁ ଅନୁଭବ କଲି ।

ବାକ୍ସଟି ସମୁଦ୍ର ଉପରେ ପଡ଼ିଲା । ପ୍ରଥମେ ସେଇଟି କିଛିଦୂର ପର୍ଯ୍ୟନ୍ତ ପାଣିରେ ବୁଡ଼ିଯାଇ ପୁଣି ଭାସି ଉଠିଲା । ମୋର ବାକ୍ସଟି ଏପରି ତିଆରି ହୋଇଥିଲା ଯେ ସେଥିରେ ପାଣି ପଶିବା ପାଇଁ ବାଟ ନ ଥିଲା ।

କିଛି ସମୟ ପରେ ମୋର ବାକ୍ସକୁ କିଏ ଟାଣୁଥିବାର ଅନୁଭବ କଲି । ମୋର ଆଶଙ୍କା ହେଲା, ଅଉ ଗୋଟାଏ ଇଗଲ୍

ମୋର ବାକ୍ସକୁ ଟେକି ନେବାର ଚେଷ୍ଟା କରୁଛନ୍ତି । ମାତ୍ର ମୋର ଆଶଙ୍କା ବୃଥା ବୋଲି ପ୍ରମାଣିତ ହେଲା । କିଛି ସମୟ ପରେ ମୋ ବାକ୍ସ ଉପରୁ କେହି ଜଣେ ମୋର ମାତୃଭାଷା ଇଂରେଜୀରେ କହିବାର ଶୁଣାଗଲା—ଏଥିରେ ଯଦି କୌଣସି ମନୁଷ୍ୟ ଅଛି, କହ ।

ମୁଁ ଆନନ୍ଦ ଓ ବିସ୍ମୟରେ କହିଲି—ମୁଁ ଜଣେ ଇଂରେଜ । ଅନୁଗ୍ରହ କରି ଶୀଘ୍ର ମୋତେ ଏ ବାକ୍ସ ମଧ୍ୟରୁ ବାହାର କରି ଦିଅନ୍ତୁ ।

ଉପରୁ ପୁଣି ଶବ୍ଦ ହେଲା—ଆଉ ଭୟର କାରଣ ନାହିଁ । ବାକ୍ସଟି ଜାହାଜ ସହିତ ବନ୍ଧା ହୋଇଛି । ଅଳ୍ପ ସମୟ ଭିତରେ ଜଣେ କାରିଗର ଏ କାଠଘରେ ଗୋଟିଏ ବଡ଼ କଣା କରିଦେଲେ ତୁମକୁ ବାହାର କରି ଆଣିବୁ ।

ମୁଁ କହିଲି—ଏତେ କଥା କରିବା ଦରକାର ନାହିଁ । ଜଣେ କିଏ ବାକ୍ସର କଡାଟି ଧରି ଜାହାଜ ଉପରକୁ ଟେକି ନେଲେ ହେବ ।

ଆମ ଦେଶର ସାଧାରଣ ଲୋକ ପକ୍ଷରେ ଏଡ଼େ ବଡ଼ କାଠର ଘରଟିଏ ଟେକିନେବା ଯେ ସମ୍ପୂର୍ଣ୍ଣ ଅସମ୍ଭବ ସେ କଥା ମୁଁ ଭୁଲି ଯାଇଥିଲି । ଲୋକେ ମୋ କଥା ଶୁଣି ମୋତେ ପାଗଳ ବୋଲି ମନେ କରିଥିବେ ।

ଯାହାହେଉ କିଛି ସମୟପରେ ଜଣେ କାରିଗର ମୋ ବାକ୍ସର ଛାତରେ ଚାରିଫୁଟ ଲମ୍ବ ଓସାରର ଗୋଟିଏ କଣା କରି ଦେଲା । ଗୋଟିଏ ନିଶୁଣି ସେବାଟେ ପକାଇ ଦେବାରୁ ମୁଁ ସେଥିରେ ଉପରକୁ ଉଠି ଆସି ଜାହାଜରେ ପହଞ୍ଚିଲି ।

ଜାହାଜର ଲୋକେ ବଡ଼ ବିସ୍ମିତ ହେଲେ । ସେମାନେ ମୋତେ ନାନା ପ୍ରଶ୍ନ ପଚାରୁଥାନ୍ତି । ଜାହାଜର କପ୍ତାନ୍ ଟମାସ ୱିଲକକ୍ସ ଦେଖିଲେ ଯେ ମୋର ଅବସ୍ଥା ବଡ଼ ଖରାପ । ସେ ମୋତେ ତାଙ୍କ ନିଜ ବଖରାକୁ ନେଇ ପ୍ରଥମେ କିଛି ଔଷଧ ଖାଇବାକୁ ଦେଲେ ଓ ବିଛଣାରେ ଶୋଇବାକୁ କହିଲେ ।

ମୁଁ ଶୋଇବାକୁ ଯିବା ପୂର୍ବରୁ ତାଙ୍କୁ କହିଲି—ସେ ବାକ୍ସରେ କେତେକ ମୂଲ୍ୟବାନ ଦୋର୍ଥ ଅଛି; ଦୁଇଟି ଟେବୁଲ, ଦୁଇଟି ଚଉକି, ଗୋଟିଏ ସୁନ୍ଦର ଦୋଳି ଇତ୍ୟାଦି । ସେଗୁଡ଼ିକ ଅଣାଇଲେ ଭଲ ହୁଅନ୍ତା ।

ହୁଏତ କପ୍ତାନ୍ ମୋ କଥାକୁ ପାଗଳର ପ୍ରଳାପ ବୋଲି ମନେ କରିଥିବେ । ଯାହା ହେଉ ସେ କେତେକ ନାବିକଙ୍କୁ ପଠାଇ ବାକ୍ସରୁ ମୋର ଜିନିଷ ଗୁଡ଼ିକ ଅଣାଇଲେ । ମାତ୍ର ସେଥିମଧ୍ୟରୁ କେତେକ ଖରାପ ହୋଇ ଯାଇଥିଲା । ସେମାନେ ସେ ବାକ୍ସର କେତେକ ପଟା ଜାହାଜର ବ୍ୟବହାର ପାଇଁ ଆଣିଲେ । ବାକ୍ସର କଣା ବାଟେ ପାଣି ପଶିବାରୁ ସେଇଟି ବୁଡ଼ିଗଲା ।

କେତେକ ସମୟ ଶୋଇବା ପରେ ମୁଁ ଉଠିଲି । ସେତେ-ବେଳକୁ ରାତି ଆଠଟା । ସଙ୍ଗେ ସଙ୍ଗେ ମୋ ପାଇଁ ଭୋଜନର ବ୍ୟବସ୍ଥା କରାଗଲା । କପ୍ତାନ୍ ମୋତେ କହିଲେ—ତୁମେ କିପରି ଏହି ପ୍ରକାଣ୍ଡ ବାକ୍ସରେ ବନ୍ଦୀ ହେଲ ସେ କଥା ମୋତେ କହ ।

ସେ କିପରି ମୋ ବାକ୍ସକୁ ଦେଖିଲେ ତାହା ପଚାରିବାରୁ କପ୍ତାନ୍ କହିଲେ—ମୁଁ ପ୍ରାୟ ଦିନ ବାରଟା ବେଳେ ମୋ ଦୂରବୀକ୍ଷଣ ଯନ୍ତ୍ର ଧରି ସମୁଦ୍ର ଆଡ଼କୁ ଚାହିଁ ଥିଲି, ଦୂରରେ ତୁମର ସେହି ବାକ୍ସଟା ଦେଖାଗଲା । ତାକୁ କୌଣସି ଜାହାଜର ପାଲି ମନେ କରି ତା ଆଡ଼କୁ ଜାହାଜ ଚଳାଇଲୁ । ଆମର

ଜାହାଜରୁ ବିସ୍କୁଟ ସବୁ ଆସିଥାଏ । ସେ ଜାହାଜରୁ କିଛି ବିସ୍କୁଟ କିଣିବ ବୋଲି ଭାବିଥିଲି । ମାତ୍ର ନିକଟକୁ ଯାଇ ଦେଖିଲେ ଯେ ସେଇଟି ଜାହାଜ ନୁହେଁ । କେତେଜଣ ଲୋକଙ୍କୁ ନୌକାରେ ବସାଇ ତାର ଅତି ନିକଟକୁ ଯିବାକୁ ପଠାଇଲି । ସେମାନେ ଫେରିଆସି କହିଲେ ଯେ ଏଇଟା ଗୋଟିଏ ପ୍ରକାଣ୍ଡ କାଠର ଘର । ମୁଁ ସେମାନଙ୍କ କଥାକୁ ଅବିଶ୍ୱାସ କରି କେତେକ ଲୋକଙ୍କୁ ନେଇ ନିଜେ ନୌକାରେ ଗଲି । ସାଥିରେ କେତେକ ଦଉଡ଼ି ନେଇଥାଏଁ । ଶେଷରେ ସେ କାଠଘରକୁ ଦଉଡ଼ିରେ ବାନ୍ଧି ଜାହାଜ ଆଡ଼କୁ ଟାଣି ଆଣିଲୁ । ତାପରେ ଶଗଡ଼ି ସାହାଯ୍ୟରେ ବାକ୍ସକୁ ଟେକିବାର ଚେଷ୍ଟା କରାଯାଇଥିଲା । ମାତ୍ର ତା ହୋଇ ପାରିଲା ନାହିଁ । ଆମେ ଗୋଟିଏ ଜଳା ପାଖେ ରୁମର ରୁମାଲଟି ଦେଖି ମନେ କରିଥିଲୁ ଯେ ଏଥିରେ କୌଣସି ମନୁଷ୍ୟ ବନ୍ଦୀ ହୋଇଅଛି ।

ସେ କୌଣସି ବଡ଼ ପକ୍ଷୀ ଦେଖିଥିଲେ କି ପଚାରିବାରୁ କପ୍ତାନ କହିଲେ,—ହଁ, ଆମର ନାବିକମାନେ ତିନିଟି ଈଗଲ୍ ପକ୍ଷୀ ଉତ୍ତରଦିଗକୁ ଉଡ଼ି ଯାଉଥିବାର ଦେଖିଥିଲେ । ମାତ୍ର ସେମାନେ ସେପରି କିଛି ବିଶେଷ ବଡ଼ ନୁହନ୍ତି ।

ବୋଧହୁଏ ସେମାନେ ଅତି ଉଚ୍ଚରେ ଉଡ଼ୁଥିବାରୁ ସେମାନଙ୍କ ଆକାର ବିଷୟରେ ପ୍ରକୃତ ଧାରଣା ହୋଇ ପାରି ନ ଥିଲା ।

କପ୍ତାନ ମନେ କରିଥିଲେ ଯେ, କୌଣସି ଅପରାଧ ହେତୁ ମୋତେ ବାକ୍ସରେ ବନ୍ଦୀ କରି ସମୁଦ୍ରରେ ଭସାଇ ଦିଆ-ଯାଇଥିଲା ।

ମାତ୍ର ଅଳ୍ପ ସମୟ ମଧ୍ୟରେ ମୁଁ କପ୍ତାନଙ୍କ ଭ୍ରମଧାରଣା ଦୂର କରି ତାଙ୍କ ନିକଟରେ ମୋର ବିଚିତ୍ର ଅନୁଭୂତି ପ୍ରକାଶ

କଲି । ଇଂଲଣ୍ଡ ଛାଡ଼ିବାଠାରୁ ସେ ପର୍ଯ୍ୟନ୍ତ ଯାହା ଘଟିଥିଲା ସବୁ-କଥା ସେ ଧୀର ସ୍ଥିର ଭାବରେ ଶୁଣିଗଲେ । ପ୍ରଥମେ ତାଙ୍କର ମୋ କଥାରେ ବିଶ୍ୱାସ ହେଉ ନ ଥିଲା; କିନ୍ତୁ କ୍ରମେ ସେ ସବୁ ସତ୍ୟ ବୋଲି ବୁଝି ପାରିଲେ ।

ମୋର ଜିନିଷମାନଙ୍କ ଭିତରେ ଗୋଟିଏ ହାତବାକ୍ସ ଥିଲା । ତାକୁ ଖୋଲି ମୁଁ ସେଥିରୁ ବ୍ରବଡିଙ୍ଗନାଗ ଦେଶର କେତୋଟି ପଦାର୍ଥ ବାହାର କରି ଦେଖାଇଲି । ରାଜାଙ୍କ ଦାଢ଼ିରୁ କେତେକ ସଂଗ୍ରହ କରି ମୁଁ ନିଜ ବ୍ୟବହାର ପାଇଁ ଗୋଟିଏ ପାନିଆଁ ତିଆରି କରିଥିଲି । ସେଇଟି ବାହାରି ଦେଖାଇଲି । କେତୋଟି ଛୁଞ୍ଚି ଓ ପିନ୍‌କଣ୍ଟା ଥିଲା । ସେ ଗୁଡ଼ିକ ଏକ ଫୁଟଠାରୁ ଏକ ଗଜ ପର୍ଯ୍ୟନ୍ତ ଲମ୍ବ । ଥରେ ରାଣୀ ମୋ ଉପରେ ସନ୍ତୁଷ୍ଟ ହୋଇ ତାଙ୍କ କାଣୀ ଅଙ୍ଗୁଠିରୁ ସୁନାମୁଦି ଟି ମୋତେ ଉପହାର ଦେଇ ମୋ ବେକରେ ଗଳାଇ ଦେଇଥିଲେ । ସେଇଟି ମୋ ହାତବାକ୍ସରେ ଥିଲା । ମୁଁ କପ୍ତାନଙ୍କୁ ତାହା ଉପହାର ରୂପେ ଗ୍ରହଣ କରିବାକୁ କହିଲି । ମାତ୍ର ସେ ସ୍ୱୀକୃତ ହେଲେ ନାହିଁ । ପରିଶେଷରେ ମୋର ଗୋଟିଏ ପୋଷାକ ଦେଖାଇଲି । ସେଇଟି ସେ ଦେଶର ଗୋଟିଏ ମୂଷାର ଚମଡ଼ାରୁ ତିଆରି ହୋଇଥିଲା ।

ମୋଠାରେ ଆଉ ଗୋଟିଏ ଜିନିଷ ଥିଲା । ଥରେ ଗ୍ଲୁଣ୍ଡାଲକ୍ଲିଚର ଜଣେ ଚାକର ପିଲାର ଦାନ୍ତମୂଳ ଧରିଥିଲା । ଡାକ୍ତର ତାର ଦାନ୍ତଟିଏ ଉପାଡ଼ି ଦେଇଥିଲେ । ମୁଁ ସେଇଟିକୁ ସଫାକରାଇ ରଖିଥିଲି । ଦାନ୍ତଟିର ଲମ୍ବ ପ୍ରାୟ ଫୁଟେ ହେବ । କପ୍ତାନ ସ୍ମୃତିଚିହ୍ନ ସ୍ୱରୂପ ସେଇଟି ମୋଠାରୁ ଗ୍ରହଣ କଲେ ।

ତାଙ୍କର ସବୁ ସନ୍ଦେହ ଦୂର ହୋଇଗଲା । ଇଂଲଣ୍ଡରେ ପହଞ୍ଚିବା ପରେ ମୋର ଏହି ଅଦ୍ଭୁତ ଭ୍ରମଣକାହାଣୀ ଜଗତରେ ପ୍ରଚାର କରିବାକୁ ସେ ମୋତେ ଅନୁରୋଧ କଲେ ।

ବାଟରେ ଜାହାଜ ବୁଲି ଭିନଟି ବନ୍ଦରରେ ରହିଲା । ଶେଷରେ ଆମେ ଇଂଲଣ୍ଡରେ ପହଞ୍ଚିଲୁ । ସେ ଦିନ ୧୭୦୬ ମସିହାର ଜୁନମାସ ତିନି ତାରିଖ । ଡାଉନସ୍ ବନ୍ଦରରେ ମୁଁ କପ୍ତାନଙ୍କ ଠାରୁ ବିଦାୟ ନେଇ ମୋ ନିଜଘରକୁ ବାହାରିଲି । ଘରେ ପୁଣି ମୋର ସ୍ତ୍ରୀ ଓ ସନ୍ତାନମାନଙ୍କୁ ଦେଖି ମୋର ଯେ କି ଆନନ୍ଦ ହୋଇଥିଲା, ତାହା ପାଠକପାଠିକାମାନେ କଳ୍ପନା କରିପାରିବେ ।

—ସମାପ୍ତ—

ମୁଦ୍ରାକର-ଶ୍ରୀ ଅଜୟକୁମାର ଘୋଷ, ଶ୍ରୀ ହରନାଥ ପ୍ରେସ, କଟକ-୨

